**ମଙ୍ଗଳାଚରଣ**

ଦ୍ୟୁଲୋକେ ଦେବତାଃ ସନ୍ତି
ପ୍ରାଣିନଃ ମର୍ତ୍ତ୍ୟମଣ୍ଡଳେ ।
ଦୈତ୍ୟାଶ୍ଚରନ୍ତି ପାତାଳେ
ସର୍ବଲୋକେଷୁ ଗର୍ଦ୍ଦଭାଃ ॥ 1 ॥
ବାଣୀପୁତ୍ର ୨୦୨୧୦୬୨୮

ଏକୈକମସ୍ତି ମସ୍ତିଷ୍କଂ
ସଂଗ୍ରହାୟ ଶିରେ ଶିରେ |
ବୁଧୈସ୍ତତ୍ର ଧୃତା ବିଦ୍ୟା
ମୂର୍ଦ୍ଧୈର୍ବା ଗୋବରସ୍ତୁପମ୍ ॥ 2 ॥
ବାଣୀପୁତ୍ର ୨୦୨୧୦୬୨୯

**ଇତି ମଙ୍ଗଳାଚରଣ ସମାପ୍ତ**

## ବିବିଧା  (ଶ୍ଳୋକଛନ୍ଦ)

ରାଷ୍ଟ୍ରସଂଗୀତମାଶ୍ରିତ୍ୟ
ପ୍ରଣମ୍ୟ କ୍ଷେତ୍ରକେତନମ୍ ।
ସତ୍ୟଂ ପ୍ରୋକ୍ତଂ ମହାଭାଗ
ହିତଂ ଦେଶସ୍ୟ ଚିନ୍ତୟେତ୍॥ 001

ନାନାଦି ଶବ୍ଦ ଏ କାଳେ
ଦୋଷସଂଯୁକ୍ତ ଲେଖନେ ।
ବହୁଧା ଅଛି ସେ ମଧ୍ୟେ
ମହଚ୍ଛନ୍ଦ ପରଂ ତଥା ॥ 002

ବିଚ୍ଛେଦଂ ମିଳନଂ ଚେଦଂ
ନରାଦେଶେ କିମସ୍ତି ବା ।
କିଞ୍ଚିତ୍ପ୍ରାପ୍ତମନାହୂତଂ
କିଞ୍ଚିଦ୍ଦୂରଂ ତଦିଚ୍ଛୟା ॥ 003

କରୋନାସଂକ୍ରମାଶଙ୍କା
କରମର୍ଦ୍ଦନବାଧିକା
ପଛୁଆ ଟାଣିବା କିନ୍ତୁ
ବଢ଼ାସି ଗୁଣ ନିଶ୍ଚୟ ॥ 004

ଅନୁଷ୍ଟୁପ୍ ଏକ ଘଣ୍ଟାକେ
ଲେଖି ପାରିବି ପାଞ୍ଚଟା
ହେବ ଏତେ ଅନାୟାସ,
ନାହିଁ ସନ୍ତୁଷ୍ଟି ସେଥିରେ ॥ 005

ସ୍ରଗ୍ଧରା ଗୋଟିଏ ଷ୍ଟାଞ୍ଜା
ଅନୁଷ୍ଟୁପ୍  ଲକ୍ଷଟେ ସମା
ତଥାପି ବେଶି ଲେଖନ୍ତି
ଅନୁଷ୍ଟୁପ୍ ପ୍ରାଜ୍ଞ ଲେଖକେ ॥ 006

ଅନୁଷ୍ଟୁପ୍ ସ୍ରଗ୍ଧରା ଆଗେ
ଛୁଆଖେଳ ଯଥା ଦିଶେ,
କି ମହାସ୍ରଗ୍ଧରା ଲେଖା
ସର୍ବୈୟା ତହୁଁ ଦୁଷ୍କର ॥ **007**
ତପୃରେ ତପୃରେ ଲକ୍ଷ
ଦଣ୍ଡକାଦି ବହୁ ବ୍ୟଥା ।
ଅର୍ଦ୍ଧସମାଦି ଛନ୍ଦେ ବି
କୀଳା କୀଳାଠୁ ଦୁଃସହ ॥ **008**

**20220812**

ସର୍ବେ ଚାହାନ୍ତି ଦେବାକୁ
ପ୍ରମାଣ ନିଜ ବୁଦ୍ଧିର
ତେଣୁ ସେ ବୁଦ୍ଧି ବାଣ୍ଟନ୍ତି
ସଦା ବୃ୍ୟଦ୍ଧ ପଛେ ନିଜେ ॥ **009**
ଏ ସତ୍ୟ ଦେଖି ଯେ ପାରେ
ସେ ବାଣୀପୁତ୍ର ଆଖ୍ୟାତ
ଅନ୍ୟେ କହନ୍ତି ଯା ତାଠୁ
ଯା ବୁଝନ୍ତି ଶୁଣା ଶୁଣି ॥ **010**
**ବୃ୍ୟଦ୍ଧ= ନିଷ୍ଫଳ;**

**20220812**

ଛେଦନା ବୃକ୍ଷ ଯେ ଭାଷି
ନିଜେ ଛେଦନତପୃର,
ତପୃରେ ବି କହେ ମିଥ୍ୟା,
କି କାର୍ଯ୍ୟେ ତା ସୁଭାଷିତ ॥ **011**
ପ୍ରତ୍ୟାଶ୍ରୟସ୍ୟ ବୃକ୍ଷସ୍ୟ
ମୂଳଂ ଛେଦତି ଯଃ ନରଃ
ତସ୍ୟ ବୃକ୍ଷସ୍ୟ ନାଶେ ସଃ
ସ୍ୱୟଂ ଯାତି ନିରାଶ୍ରୟଃ ॥ **012**

**20220816**

ସ୍ୱଦେଶୀ  କୁର୍କୁର ଜ୍ଞାତ
ଅରତତ୍ରପ ନାମରେ;
କ୍ରୋଧୀ ନାମେ ବି ସେ ଖ୍ୟାତ
ଅସ୍ଥିଖାଦ ବି ସେ ଡକା ॥ **013**
କୃତଜ୍ଞ ମଧ୍ୟ ସେ କୁତ୍ତା
ଶରଜ୍କାମୀ ତଥା ସେହି ।
ଅତଏବ ଶିବାରାତି
ସର୍ବଲକ୍ଷଣଭୂଷିତ ॥ **014**

ଲକ୍ଷ୍ମୀବାଈ ମଲେ ଯୁଦ୍ଧେ
ସ୍ୱଦେଶହିତସାଧନେ
ଆନେ ଅଛନ୍ତି ଦୀର୍ଘାୟୁ
ସ୍ୱଭର୍ତ୍ତାପ୍ରାଣପୀଡନେ ॥ 015

20220817

ଚଢାଏ ନିତି ଯେ ବୋତଲ୍
ନାରୀସଙ୍ଗ କରେ ତଥା
ଫେରେ ନା ସତ୍ପଥେ ଆଦୌ
ବଲ୍ଲଭାବେଲଣାର୍ହ ସେ ॥ 016

20220817

ଲୋଭେ ନୁହଁ କ୍ଷୁଧାରେ ଖା
ଆତ୍ୟାହାରେ ହିଁ ଆପଦ;
ଘୂର୍ଣ୍ଣିବାତ୍ୟା ତଥା ପେଟେ
ପଡ ନା ନିମ୍ନଚାପରେ ॥ 017

20220820

. ସାଧନେ କା ବିତେ ରାତ୍ରି
କାହାର ସ୍ତେୟବୃତ୍ତିରେ;
ସାଧକ ପ୍ରାୟଶଃ ମୌନ
ଭାଷେ ବହୁତ ଚୋରକ ॥ 18

ସାଧନା ହେଉ ସାହିତ୍ୟେ
ଅଧ୍ୟାତ୍ମେ ହେଉ ସେ ଅବା,
ବାକ୍ ଶୂନ୍ୟସାଧନେ ଯୋଗୀ
ବାଚାଟ ତ୍ୟକ୍ତକର୍ମ ଯେ ॥ 19

20220821

ମଲା ପରେ କି ବା କୀର୍ତ୍ତି
ତାକୁ କି ପ୍ରେତ ଶୁଙ୍ଘିବ ?
ମର ନା କୀର୍ତ୍ତି ଆଶାରେ
ଖା ଗଣ୍ଡେ ଅନ୍ନ ପେଟକୁ ॥ 20

20220823

**कदवा कदवा सत्यं**
**न तत्सत्यं मुहुर्मुहु**
**तथापि त्वं महाबाहो**
**लेखनीचालनं कुरु ॥** 21

20220824

**शुभम्भवतु ते वत्स**
**सर्वविघ्न विनश्यतु ।**
**यशस्वी भव संसारे**
**कृत्वा संस्कृतसाधनम् ॥** 22

20220824

**ओड्रभाषापि ते ज्ञाता**

**अहो भाषाविशारद !**

**संस्कृते मात्र विद्वान् त्वं**

**भ्रान्तासीत् मम धारणा ॥ 23**

**20220824**

କୃପାରେ ନ ଦିଏ ଲାଭ

ରାଗିଲେ ନ କରେ କ୍ଷତି,

ଆଚରେ ପାତ୍ରତା ଦେଖି

ସେ ଅତ୍ୟୁତ୍ତମ ମାନବ ॥ **24**

**20220825**

ଅବିବେକୀଙ୍କୁ ନିନ୍ଦନ୍ତେ

ଥିଲେ ବିବେକ ମାନବେ,

ଶହେରେ ତ ନବେ ଭାଗ

ବିବେକ ନ ଥିବା ଜନ ॥ **25**

**20220825**

ସଶ୍ରଦ୍ଧ ପୂର୍ବଜେ ସେବା

ଶ୍ରାଦ୍ଧ ସେ ଥାଉଁ ଜୀବନେ,

ତାହା ନ କରି ନିଷ୍ଠାରେ

ମୃତ୍ୟନ୍ତେ ଶ୍ରାଦ୍ଧ ନିଷ୍ଫଳ ॥ **26**

**क्रोधस्तव प्रभु क्रोधि**

**त्वामेव दण्डयिष्यति**

**नास्तिकिञ्चिदपि ज्ञानम्**

**क्रोधस्य दण्डनं विना ॥ 27**

କ୍ରୋଧ ତୁମ୍ଭ ପ୍ରଭୁ କ୍ରୋଧି

ଦେବ ତୁମ୍ଭଙ୍କୁ ଦଣ୍ଡ ସେ ।

ନାହିଁ ତାର କିଛି ଜ୍ଞାନ

ଦଣ୍ଡ ଦେବାଠୁ ଅନ୍ୟକୁ ॥ **28**

କଠୋର ସତ୍ତ୍ୱର ସ୍ୱାର

ଜିହ୍ୱା ମିଥ୍ୟାର ଚାତୃର

ବର୍ଜେ ଆପଦରେ ମିଥ୍ୟା

ଥାଏ ସତ୍ୟ ହିଁ ହୃଦ୍ଗତେ ॥ **29**

କଠୋର ସତ୍ତ୍ୱର ସ୍ୱାର

ଜିହ୍ୱା ମିଥ୍ୟାର ଚାତୃର

ତେଜେ ଆପଦରେ ମିଥ୍ୟା

ଥାଏ ସତ୍ୟ ହିଁ ହୃଦ୍ଗତେ ॥ **30**

ମହଜନଙ୍କ ଦେହାନ୍ତେ
ଦେବତ୍ୱ କରି ଅଧ୍ୟାସ
ପୁତ୍ତଳେ ହାର ପିନ୍ଧାନ୍ତି
ବାଣୀ ଥାଏ ଅନାଦରେ ॥ 31

ଅନନ୍ତ ସର୍ଜନା ମଧ୍ୟେ
ନିଃସୂତ୍ର ନରଜୀବନେ
ଭଗ୍ନୀ ମାଗେ - ରଖ ଭ୍ରାତା,
ଶ୍ରଦ୍ଧାରେ ସୂତ୍ରବନ୍ଧନେ ॥ 32

ପଦ୍ମଲୋଚନ ନିର୍ନେତ୍ର
ସୁକୁମାରଟି କେମ୍ଫୁଲା
ଅସ୍ଥିକଙ୍କାଳରେ ଭୀମ,
ଡାକ ଡାକିବ ଯାକୁ ଯା ॥ 33

ଗାଭୀଦୋହନରେ ଲାଗେ -
ଦୁହିତା ସେହି କାରଣେ ।
ଗାଈ ନାହାନ୍ତି ଯା ବାସେ
ତା କନ୍ୟା ଦୁହିତା କି ନା ॥ 34

ଉଠାଏ ଭାର ଯେ କିମ୍ବା
ଭାର୍ଯ୍ୟା ସେ ଭାରଟେ ଯିଏ;
ତେବେ ଚାକିରିଆ ବୋହୂ
ଭାର୍ଯ୍ୟା ସ୍ୱାମୀର ନା ନୁହେଁ ॥ 35

ବିଚ୍ଛେଦ ଧ୍ରୁବ ସର୍ବତ୍ର
ପୁନର୍ଯୋଗ ସସଂଶୟ
ତୁମ୍ଭଙ୍କୁ ତେଜିବେ ସର୍ବେ,
ବା ତୁମେ ତେଜି ଚାଲିବ ॥ 36

20220826

ଅତୃପ୍ତାତ୍ମା

**प्राप्तव्यास्ते चतुष्पार्श्वे**
**असंख्य ज्ञानिपुंगवाः ।**
**अतृप्ताः मोक्षलब्धास्ते**
**अशान्ताश्च निरन्तरम् ॥** 37

— ललाटेन्दु कवि

ମୋକ୍ଷପ୍ରାପ୍ତ ଅତୃପ୍ତାତ୍ମା
ଅସଂଖ୍ୟ ଜ୍ଞାନିପୁଂଗବ
ଘେରିଛନ୍ତି ଚତୁଷ୍ପାର୍ଶ୍ୱେ
ଅଶାନ୍ତ ବି ନିରନ୍ତର ॥ 38

— ଲଲାଟେନ୍ଦୁ କବି

20220826

ସ୍ୱାର୍ଥାୟ ଯସ୍ୟ ସାମର୍ଥ୍ୟଃ
ଶକ୍ତିଃ ସଂଗ୍ରହଣାୟ ଚ
ନ ହ୍ୟନ୍ୟଜନକଲ୍ଯାଣେ
କିଂତଚ୍ଛକ୍ତିଃ ବୃଥା ବଳମ୍ ॥ 39

**Lalatendu Kabi VP**
**2022-08-27/12:45**



ସାମର୍ଥ୍ୟ ସ୍ୱାର୍ଥରେ ଯାର
ଶକ୍ତି ଭୋଗର ସଂଗ୍ରହେ
ନୁହେଁ ଅନ୍ୟହିତେ କିଞ୍ଚିତ୍
ଧିକ୍ ସେ ସାମର୍ଥ୍ୟ ସେ ବଳ ॥40

ହାତଟେ ମାପି ଚାଖଣ୍ଡେ
ଚାଲିଲେ ବି ତୁମେ ସଦା
ମାପି ସେ ମାପିବା ଯନ୍ତ୍ର
ଦେଖ ବିଶ୍ୱାସଯୋଗ୍ୟ କି ॥ 41

ସର୍ବେ ଧର୍ମସଭା ଯାନ୍ତି
ଶୋଇବାକୁ କଥା ଶୁଣି
ପିଲାଛୁଆଙ୍କ ଜଞ୍ଜାଳ
ନ ଥିବାରୁ ସଭାସ୍ଥଳେ ॥ 42

ଭକୁଆ ନେତ୍ର ବିସ୍ଫାରି
ସଭାରେ ଚାହିଁ ଶୂନ୍ୟକୁ
ମଥାରେ ନ ପଶେ ବିଦ୍ୟା
କହନ୍ତି କଳି ଧର୍ମ ମୁ ॥ 43

କିଏ ମୁନି କିଏ ଯୋଗୀ
କେ ସନ୍ନ୍ୟାସୀ କିଏ ଯତୀ
ତପସ୍ୱୀତ୍ୟାଗିସନ୍ନ୍ୟାସୀ
ମୁଁ ଚାହେଁ ଯୋଗ୍ୟ ଦର୍ଶକ ॥ 44

**20220827**

ନିଃସ୍ୱ ରାଜା କରେ ସେବା

ମୂଳଶ୍ଲୋକଃ:

ବିକ୍ରୀତ୍ୱା ଦେଶସମ୍ପତ୍ତିଃ
ରାଜନ୍ କିଂ ଖାଦୟିଷ୍ୟସି?
ବୁଢାଘୋଡାସମୂହିତ୍ୱା
ପୋଡାରୋଟୀଂ ବଢାୟତୁ ॥ 45

ଅନୁବାଦ:

ବିକି ଦେଶର ସମ୍ପତ୍ତି
ରାଜନ୍! କାରେ କି ଖୋଇବ?
ବୁଢାଘୋଡା ପରେ ଥାଇ
ପୋଡାରୋଟୀ ବଢାଅ ଯା ॥ 46

ସୁନାରଙ୍ଗର ଆଲେପେ
ଭ୍ରମାଏ ବ୍ୟାଜ ଯେସନ
ତଥା ନେତାଙ୍କ ସାନ୍ନିଧ୍ୟେ
ଲୁଟେ ଦେଶକୁ ଦୁର୍ଜନ ॥ **47**

(ବ୍ୟାଜ= imitstion)

**202208292100**

====================

କବିତା: ତଗୋମଯେ ଚବାତୁହି

ଛନ୍ଦ: ପଥ୍ୟାବକ୍ତ୍ର ଅନୁଷ୍ଟୁପ୍ (ଅର୍ଦ୍ଧସମ ମାତ୍ରିକ ଛନ୍ଦ)

====================

ଲେଖିବା ଭାବନା ଯେବେ
ମିଳୁ ନାହିଁ ଯଥୋଚିତ ।
ପୂରାଅ ପଦଟେ ଲେଖି
ଭଲେହେଳେ ତଗୋମଯେ ॥ **48**

*ଭଲେହେଳେ= ଭଲେ ଓ ହେଳେ;*
*ତଗୋମଯେ= ତ ଗୋ ମ ଓ ଯେ;*

ନିଜ ରାଜ୍ୟର ଏ ଭାଷା
ସହଜେ ଲେଖି ପାରିବ ।
ନ ହେଲେ ସଂସ୍କୃତେ ଲେଖ
ଅପ୍ୟେବେଵ ଚବାତୁହି ॥ **49**

*ଅପ୍ୟେବେଵ= ଅପି+ଏବ+ଇବ;*
*ଚବାତୁହି= ଚ ବା ତୁ ଓ ହି;*

**2022**

ବିବିଧା **50-51: ସ୍ୱର୍ଗଦେବତା**

ଯହିଁ ଅର୍ଦ୍ଧାଧିକ ବ୍ୟକ୍ତି
ମୁଷ୍ଟାନ୍ନଗ୍ରାସନିର୍ଭର
ରାଜବୈଭବ ସେ ଦେଶେ
ଜୋତା-କୁଟଣ ନିର୍ଦ୍ଧନେ ॥ **50**

ତଥାପି ରାଜ-ତାଵାରେ
ଅର୍ଦ୍ଧଦଗ୍ଧ କଳେବରେ
କହେ ନିର୍ଲଜ୍ଜ ନିର୍ଦ୍ରବ୍ୟ
ଏ ରାଜା ସ୍ୱର୍ଗଦେବତା ॥ **51**

*ମୁଷ୍ଟାନ୍ନଗ୍ରାସ= ମାଗଣାଶସ୍ୟଖିଆ;*
*କୁଟଣ= କୁଟାଣ; ନିର୍ଦ୍ରବ୍ୟ= ନିଃସ୍ୱ;*

**202208301101**

ଉପୋଷ୍ୟେ ଗୁରୁ ସଂରୁଗ୍ଣ
ଶଯ୍ୟାତ୍ୟାଗେ ଯମାଗମ;
କହେ ଭକ୍ତ ମହାନନ୍ଦେ:
ଯୋଗନିଦ୍ରିତ ମୋ ଗୁରୁ ॥ **52**

ଉପୋଷ୍ୟ= ଉପବାସ;
ସଂରୁଗ୍ଣ= ବିଧ୍ଵସ୍ତଶରୀର;
ଯୋଗନିଦ୍ରିତ= ଯୋଗନିଦ୍ରାଗତ;
**202208301220**

ମାନବେ ସୃଷ୍ଟି ଆରମ୍ଭେ
ସୃଜିଲେ ପରମେଶ୍ଵର
ନରଙ୍କ ସର୍ବସାମଗ୍ରୀ
ଗଢିଲା ଚୀନ କେବଳ । **53**
**202208301245**
ବିରୋଧର ଗଳା ରୋଧେ
ଯୋଦ୍ଧାଙ୍କୁ ବ୍ୟଙ୍ଗ ଯେ କରେ
ସର୍ବବିତ୍ତ କରେ ବିକ୍ରୀ
ମୂର୍ଖ ସେ ରାଷ୍ଟ୍ରପାଳକ ॥ **54**
**202208301245**
{ମାନପତ୍ର ଓ କବି}
ମାନପତ୍ରଟି ସର୍ବାଗ୍ରେ,
କବିତା-ଗାର ତା ପରେ,
ଭାଷାନ୍ଦୋଳନ ତା ଅନ୍ତେ,
ଅଆ-ଶିକ୍ଷଣ ଶେଷକୁ ॥ **55**
**202208301530**
ଟଙ୍କା ଖାଇ ଯିଏ ଯେତେ
ଗଲେ ଖସି ଖୁସା, ଦିନେ
ଚୋର ହେବେ ଛୁଆମାନେ
ଶିଖିଲେ ଗୁଣ ବାପର ॥ **56**
ଶ୍ରୁତିବର୍ଜିତ ବୈଶସ୍ତ୍ର
ମତିବର୍ଜିତ ନାଗର
ଟଙ୍କା-ଖାଦକ କଟ୍ଟାଳ
ସେ ଦେଶ ଦୈବ ଆଶ୍ରୟେ ॥ **57**
**ଶବ୍ଦାର୍ଥ:**
*ଶ୍ରୁତିବର୍ଜିତ= କାହାକଥା ଶୁଣେ ନାହିଁ;*
*ବୈଶସ୍ତ୍ର= ସର୍କାର; ନାଗର= ନାଗରିକ;*
*କଟ୍ଟାଳ= କଟୁଆଳ, ରାଜକର୍ମୀ;*
**202208**
ଦଙ୍ଗା ସର୍ଜି ପ୍ରଜାବର୍ଗେ
ଦେବାୟତନ ଯେ ଗଢେ
ଗୋଷ୍ଠୀଭେଦ କରେ ରାଷ୍ଟ୍ରେ
ମୂର୍ଖେଶ ଯମକୁଞ୍ଚିତ ॥ **58**
**202208302340**

ମାନାପମାନରେ ଯାର
ପଡେ ନା କିଛି ଅନ୍ତର,
ମୁକ୍ତ ସେ ଯୋଗସଂସିଦ୍ଧ,
ବ୍ରେନ୍ଲେସ୍ ସଂପୂର୍ଣ୍ଣ ଅନ୍ୟଥା (ବା)
ଅଦବା ଗୋବରାଟୀଏ (ବା)
ମାଥେ ଗୋବର ଅନ୍ୟଥା ॥ 59

ଶେଷ ପାଦଟି ଏ ଭାବେ
ବିକଳ୍ପେ ନିତ୍ୟ ପୂରିତ;
ଯାହା ଲେଖ ଯିଏ ବ୍ରେନ୍ଲେସ୍,
ବ୍ରେନ୍ଲେସ୍ ରହିବ ସର୍ବଦା ॥ 60

202208311415

ମହାଭାରତରେ ଯାହା
ଅବ୍ୟକ୍ତ ରହି ଯାଇଛି
ଜାଣିପାରିବ ବିସ୍ତାରେ,
ସ୍ମାର୍ଟ୍-ମହାଭାରତେ ପଢି ॥ 61

କିଏ ଧର୍ମ କିଏ ଧାତା,
କେ ସୃଜେ କର୍ମରେ ଫଳ;
ଦାସ ଭାଗ୍ୟର ଏ ସର୍ବେ,
ଆପନ୍ନ ସ୍ୱୀୟ ରକ୍ଷଣ ॥ 62

ଚତୁରଙ୍ଗର ସଂସାରେ
ପର୍ଯ୍ୟାୟେ ଶ୍ୱେତ-କଜ୍ଜ୍ବଷ
ଘର ଯେତେ ଦିବା-ରାତ୍ରୀ,
ଗୋଟି ସେ ଖେଳରେ ନର ॥ 63

ଚତୁରଙ୍ଗର ପଙ୍ଗାରେ
ସେ ପ୍ରାଣୀଙ୍କୁ ଇତସ୍ତତଃ
ଚଳାଏ ପୁଣି ସଂହାରେ,
ଖେଳ ଶେଷେ ଦିଏ ରଖି ॥ 64

ଧୂର୍ତ୍ତ ବିଜ୍ଞ ସିନା କଣ୍ଢା
ହୁଣ୍ଡାଟା ବୋଝ ଯେସନ,
ଗୋହତ୍ୟା ଗୋଟିଏ ହେଲେ
ବ୍ରହ୍ମହତ୍ୟା ହିଁ ଅନ୍ୟଟା ॥ 65

ବାଛ ଇଚ୍ଛାମତେ କୀଳା
ଲମ୍ବା ନବ କି ଗୋଳିଆ;
ଫୋପାଡି ଦେବି ଦୂରେ ମୁଁ
ଲମ୍ବା ଓ ମୁନିଆଁଟି ବି ॥ 66

କୁନିଟେ ହେଉ ବା ସ୍କାର
କୀଳା ନ ରଖ ପାଖରେ,
ଧୂର୍ତ୍ତ ଜ୍ଞାନୀ, ଗବା ସାଧା -
କା ସାଙ୍ଗେ ମିଶନା ଜମା ॥ 67

ଅଯଥା କରିଲେ ଚିନ୍ତା
ଆସେ ଦୁର୍ବୁଦ୍ଧି ମସ୍ତକେ
ବୃଥାଚିନ୍ତାରୁ ଦୂଶ୍ଚିନ୍ତା,
ବରଂ ନିଶ୍ଚିନ୍ତରେ ଶୁଅ ॥ 68

**20220831**

ମୁ ମଧ ଲେଖିଛି ଶ୍ଳୋକେ
ଭାଷା ଯଦି ବି ଓଡିଆ,
ଶ୍ଳୋକର କେଉଁ ମର୍ଯ୍ୟାଦା
ଭାଙ୍ଗି ଦେଲି କି ଭାଷିବ ॥ 69

ଏମନ୍ତ ନୁହଁ:  ଏ ଲେଖା
ଥିଲା ଶ୍ଳୋକେ ମୁ ମାତ୍ରକ
ମନ୍ତବ୍ୟ ଦେଲି ଯା ଗୀତ,
ଶ୍ଳୋକ ନୁହେଁ କହେ ବହି ॥ 70

ରଚିଲେ ବର୍ଣ୍ଣ ବିନ୍ୟାସ
ଛନ୍ଦଶାସ୍ତ୍ର ବିଧାନରେ,
ଶ୍ଳୋକ ତାହା;  କିଏ ଭାଷେ
ସଂସ୍କୃତେ ଶ୍ଳୋକ କେବଳ ॥ 71

ମୋ ଲେଖା ବି ଅଟେ ଶ୍ଳୋକେ
ହେଉ ସେ ଓଡିଆ ପଛେ ।
ପଥ୍ୟାବକ୍ତ୍ରେ ମୁଁ ଯା ଲେଖେ
କଠୋର ଶ୍ଳୋକମାତ୍ରଠୁ  ॥ 72

ଏକ ଉତ୍ତାରୁ ଯେ ଛନ୍ଦେ
ମନା ସନ ଗଣଦ୍ୱୟ,
ତଭିନ୍ନ ସମପାଦେ ବି
ରଗଣ ପ୍ରତିବନ୍ଧିତ ॥ 73

ସେ ପଥ୍ୟାବକ୍ତ୍ରରେ ଲେଖା
ଗୀତା ଚାଣକ୍ୟଶିକ୍ଷଣ,
ଶଙ୍କରାଚାର୍ଯ୍ୟଠୁ ବ୍ୟାସ
ସଭିଙ୍କ ଶ୍ଳୋକନିର୍ଝର ॥ 74

**20220901**

ଘରେ କାହାର ଦେହାନ୍ତେ
କାନ୍ଦନ୍ତି ସ୍ୱଜନେ ବସି ।
ଝରେ ନା ଅଶ୍ରୁ ଟୋପାଏ
ଦେବମୂର୍ତ୍ତି ବିସର୍ଜନେ ॥ 75

ଆତ୍ମୀୟେନ ସହ ପ୍ରେମ
ଭବତି ପ୍ରବଳଂ ଜନେ ।
କୁତସ୍ତନ୍ମଧୁସଂବନ୍ଧଃ
ଦେବୈଃ ତିଷ୍ଠତି ମାନବେ ॥ 76

ଅର୍ଥାତ୍:
ଆତ୍ମୀୟବାନ୍ଧବେ ପ୍ରେମ
ଯେତେ ଥାଏ ମନୁଷ୍ୟଠି ।
କାହିଁ ସେ ପ୍ରେମସମ୍ବନ୍ଧ
ଦେବଙ୍କ ସହ କା ମନେ ॥ 77

ଶ୍ଳୋକ ସଂସ୍କୃତରେ ଲେଖା
ହୁଏ ଯେଉଁ ବିଧାନରେ ।
ଲେଖିଲେ ସେହି ସିଦ୍ଧାନ୍ତେ
ଶ୍ଳୋକ ପ୍ରାକୃତ ନିଶ୍ଚୟ ॥ 78

ରାମନାମ ଗତାତ୍ମାଙ୍କୁ
ଶୁଣାନ୍ତି ଉଚ୍ଚ ନାଦରେ ।
ଜୀବନେ ଥାଉଁ ସେ ନାମ
ଶୁଣାଏ ନାହିଁ କେ ଥରେ ॥ 79

20220901

When a kinsman dies
The household cries;
But idols are immersed
And no heart is pierced. 1

For man loves his horde
From the heart's essense
But he loves a god
In his sheer pretence. E/2

20220901

ଆସ ଏହି ନଦୀକୂଳ
ଯା ବେନି ପାର୍ଶ୍ୱ ଅଞ୍ଚଳେ
ଏ ପାଖେ ଶସ୍ୟ ଉଲ୍ଲୋଳ
ସେ ପାଖ ଗ୍ରୀଷ୍ମରେ ଜଳେ ॥ 80

ଏ ଦେଶେ ନାହିଁ କେ ସ୍କନ୍ଧ
ନାହିଁ କେ ଦାସ ସେବକ ।
ସୌହାର୍ଦ୍ଦ୍ୟରଜ୍ଜୁରେ ବଦ୍ଧ
ସର୍ବେ ଆନେ ଶୁଭେଚ୍ଛୁକ ॥ 81

ସ୍କନ୍ଧ= ରାଜା;

ନାହିଁ ଭାଷାଜାତିଦ୍ୱେଷ
ସମ୍ପ୍ରଦାୟବିଭାଜନ ।
ସଭିଙ୍କ ସ୍ୱୀୟ ଏ ଦେଶ
ସର୍ବେ ଶ୍ରଦ୍ଧାର ଭାଜନ ॥ 82

ଆସ ଏହି ତରୁଛାୟେ
ଚଳେ ଶୀକର ଶୀତଳ;
ଘଡିଏ ବସ ଏ ଶ୍ରାୟେ
ପିଅ ସ୍ନିଗ୍ଧ ନଦୀଜଳ ॥ 83

ଶ୍ରାୟ= ଆଶ୍ରୟ;

ଗୀତିକାପୁସ୍ତିକା ନିଷ୍ଠେ
ସାଥୀ ଧରିବ ହସ୍ତକେ ।
ଶ୍ରଦ୍ଧାର ମଦିରା ଉଚ୍ଛେ
ତୋଳି ଦେଖାଅ ମସ୍ତକେ ॥ 84

କର ସର୍ବେ ସମାରୋହ
ପଛକେ ହୁଅ ନିର୍ଦ୍ଧନ ।
ଛୁଟାଅ ପ୍ରେମସମ୍ମୋହ,
ସୁଗନ୍ଧୀ ପ୍ରେମଚନ୍ଦନ ॥ 85

ଭୁଲି ଯାଅ ଅହଂକାରୀ
ନେତା ରାଜନ୍ୟଶାସକେ
ମରନ୍ତୁ ପୌରୁଷାଚାରୀ
ସଂଗ୍ରାମେ ହାରି ମସ୍ତକେ ॥ 86

20220901

ପାପପୁଣ୍ୟ କି ବା କାର୍ଯ୍ୟେ
ମନଦେହେ ଅଚେତନେ ।
ମାତ୍ର ଚେତନ ଏ ଆତ୍ମା,
ଅଜ୍ଞାନେ କର୍ମବନ୍ଧନେ ॥ 87

20220902

ପ୍ରକୃତିପ୍ରତ୍ୟୟେ ଶବ୍ଦ
ବିଭିନ୍ନାର୍ଥ ପ୍ରକାଶକ ।
କହେ ଅଜ୍ଞ ହିଁ - ଏ ଶବ୍ଦ
ଅମୁକାର୍ଥକ କେବଳ ॥ 88

ଅନେକ ଶବ୍ଦ ଏକାର୍ଥେ
ନାନାର୍ଥ କଥା ଏକରେ
ଉଠି ଯେବେ ଗଲା ଜାଣ
ଅଭିଧାନ ହିଁ ଦୁଷ୍କର ॥ 89

ଅନ୍ତ୍ୟେଷ୍ଟି ଶେଷସଂସ୍କାର
ମାତ୍ର ଦେହୀର ଭୂତଳେ,
କି ସଂସ୍କାର ମଲା ଦେହେ,
ସଢ଼ିବା ତାର ନିଶ୍ଚିତ ll 90

**20220902**

ସର୍ବେ ବିଦ୍ୱାନ୍ ମୁଖଗ୍ରନ୍ଥେ,
ଜ୍ଞାନ ବାଣ୍ଟନ୍ତି ମୁଖ୍ୟତଃ l
କିନ୍ତୁ ଅଭ୍ୟନ୍ତରେ ଦେଖ
ଅତୃପ୍ତାତ୍ମା ଜଣେ ଜଣେ ll 91

ଦୀନନୈର୍ବିନ୍ୟ ପୂଜାରେ
ସହସ୍ରାବ୍ଦୀ ଗଲା ପରେ,
ଦରିଦ୍ର ଯଦି ସେ ଦେଶ
କିମାଶ୍ଚର୍ଯ୍ୟଂ ଫଳାଫଳେ ll 92

ଭାଷାନ୍ଦୋଳନରେ କେବେ
ନାହିଁ ଭାଷାର ଉନ୍ନତି l
ନୀରବେ ସାଧନାମାର୍ଗେ
କର ତା ହିତସାଧନ ll 93

**20220903**

ସେ ଅତ୍ୟୁର୍ବର ମସ୍ତିଷ୍କ
ବ୍ୟବସ୍ଥା ଯାର ଏପରି,
ଯେତେ ଭକ୍ତ ତୁମେ ହେଲେ,
ଥିବେ ଭକ୍ତ ସମର୍ଥକ ll 94

ମାନବାଃ ମନୁସନ୍ତାନାଃ
ସତ୍ୟମେତଭବେଦ୍ୟଦି l
କଥଂ ସଃ ମାନବୋ ସ୍ୱୟଂ
ମନୋଃ ବଂଶଜ କିଂ ମନୁଃ ll ଔ 95

**ଅର୍ଥାତ୍**

ମାନବେ ମନୁବଂଶୀ ହିଁ
ଏ କଥା ସତ୍ୟ ମାନିଲେ l
ସ୍ୱୟଂ ସେ ମନୁ କେମନ୍ତେ
ମାନବ ଅନ୍ୟ ବଂଶଜ ll 96

**that is,**

**If the word mAnava**
**Means just Manu's offspring;**
**How is Manu himself one,**
**Someone else's son, O king ll 97**

**20220904**

ଈଶ୍ୱରଙ୍କ ବ୍ୟବସ୍ଥାରେ

ଚାମଚା ଭର୍ତ୍ତି ବିଶ୍ୱରେ ।

କର ଯେତେ ବି ମୂର୍ଖୋକ୍ତି

ଥିବେ ବହୁ ସମର୍ଥକ ॥ 98

ମୂର୍ଖମସ୍ତିଷ୍କ

ମସ୍ତିଷ୍କେତି ବଦେତ୍ପ୍ରାଜ୍ଞାଃ

ଗ୍ରାମୀଣାଃ ଗୋବରଂ ବଦେତ୍ ।

ମସ୍ତୁଲୁଙ୍ଗଶ୍ଚ ବଦେଦ୍ଗୌଡାଃ

ଗୁଡାଖ୍ୱିତି ବଦାମ୍ୟହଂ ॥ 99

ମସ୍ତୁଲୁଙ୍ଗ= ମସ୍ତିଷ୍କ (ମସ୍ତୁ= ଦହିପାଣି,
cream;ଲୁଙ୍ଗ= ଟଭାଫଳ);
ଗୁଡାଖ୍ୱିତି= ଗୁଡାଖୁ+ ଇତି (ବୋଲି)

ବିଦ୍ୱାନ୍ କହନ୍ତି ମସ୍ତିଷ୍କ,

ଗୋବର ଗ୍ରାମସଜ୍ଜନେ ।

ମସ୍ତୁଲୁଙ୍ଗ କହେ ଗୌଡ,

ମୋ ଭାଷାରେ ଗୁଡାଖୁ ସେ ॥100

L. Kabi 20220904

ଅହଂକାରାଦସତ୍ୟାଦ୍ୱି

ନଷ୍ଟଂ ଗଚ୍ଛନ୍ତି ମାନବାଃ ।

ନାସ୍ତ୍ୟେତଲ୍ଲୋକକଲ୍ୟାଣେ

ସ୍ୱହିତେ ନାସ୍ତି କିଞ୍ଚନ ॥ 101

ଅହଂକାରେ ତଥାସତ୍ୟେ

ଯାନ୍ତି ନାଶ ହିଁ ମାନବେ ।

ନୁହେଁ ତା ଲୋକକଲ୍ୟାଣେ

ସ୍ୱହିତେ ବି ନୁହେଁ କମା ॥ 102

ଶ୍ଳୋକେ ତୁ ରଫଳା ଏକା

ସ୍ଖଳିତା ଦୃଶ୍ୟତେ ମୟା

ଶାସ୍ତ୍ରସ୍ଥାନେ କଥଂ ଶାସ୍ତ

ଦୃଶ୍ୟତେ କୃତ ବିଭ୍ରମେ ॥ 103

ଶ୍ଳୋକରେ ରଫଳା ଏକ

ମୋତେ ଦିଶୁଛି ଛାଡିଲ ।

ଶାସ୍ତ୍ରସ୍ଥାନେ କିଆଁ ଶାସ୍ତ

ବିଭ୍ରମେ ଲେଖି ଦେଇଛ ॥ 104

L. Kabi 20220908

ସଙ୍ଘାନୁହାସଙ୍ଘଗତିଃ

=========

ବିରୋଧଂ କର୍ତ୍ତୁମେକେନ

ସଙ୍ଘେନ ଯଦି ନ କ୍ଷମଃ

ଶୀଘ୍ରଂ ହି ପେଞ୍ଚପାଞ୍ଚେନ (ବୁଦ୍ଧିସଂଯୋଗାତ୍)

ମହାସଙ୍ଘମୁଦୀରୟେତ୍ ॥ 105

ସଂଘାତ୍ କିଞ୍ଚିଦପି ପ୍ରାପ୍ତିଃ

ନ ସମ୍ଭଵଃ କଦାଚନ ।

ଯଦି କିଞ୍ଚିଭବେଲ୍ଲାଭଃ

ସଙ୍ଘସ୍ୟାଶ୍ରୟ ଗଚ୍ଛତୁ ॥ 106

କାଇଦା କରି ନାନାଦି

ସଙ୍ଘ ହେବ ଜଣାଇଲି,

ବୁଝିବେ ମାତ୍ର ଏହାକୁ

ଦୁହେଁ ଲେଖକମାଲିକ ॥ 107

L. Kabi 20220909

ଅଦୋଷ କେ କିଏ ଦୋଷୀ

ନ ଥାଏ କିଛି ସେଥିରେ ।

ଯିଏ ଅଧିକ ପାୱାର୍ଫୁଲ୍

ସେ ଦିଏ ଗାଳି ଅନ୍ୟକୁ ॥ 108

L. Kabi 20220909

ମନୁଷ୍ୟ ଗାଳି କେବେ ହେଁ

ଦିଏ ନା ଅନ୍ୟ ମାନବେ ।

ବକା ବକି କରେ ମାତ୍ର

ପାୱାରାଧିକ୍ୟ ପାଖରେ ॥ 109

ପାୱାରାଧିକ୍ୟ=କ୍ଷମତାଧିକ୍ୟ;

ବୃଦ୍ଧକାଳେ କି ବା ଖ୍ୟାତି

ବାର୍ଦ୍ଧକ୍ୟେ ଲଭିଲେ ଖ୍ୟାତି

କି କାର୍ଯ୍ୟେ କହ ମୋହର;

ଲିଖନେ ଦକ୍ଷତା ମାତ୍ର

ଅଛି ମୋ ଛାତ୍ର ଜୀବନୁ ॥ 110

ତଥାପି ହେ ମହାଭାଗ

ସାଧୁବାଦ ମୁଁ ଦେଉଛି

ହିତୈଷୀ ଯେଣୁ ମୋ ତୁମ୍ଭେ

ଅନୁଜ ପ୍ରାୟ ନିଶ୍ଚିତ ॥ 111

L. Kabi 20220910

. ଆତ୍ମା ହିଁ କର୍ତ୍ତା

ଦେହଶ୍ଚିତ୍ତୌ ତଥା ବୁଦ୍ଧିଃ

ଶରୀରାଣି ଜଡତ୍ରୟ ।

ଯଦ୍ୟେତେଷ୍ଣୁ ଭବେତ୍କର୍ତ୍ତା

ମୁଢିଂ ଖାଦତି ଚେତନଃ ? ॥ 112

(ମୁଢିଂ=ମୁଆଂ=ଭୋଜ୍ୟଂ=ଘୁଗ୍ନିଂ=ଭୃଷ୍ଟତଣ୍ଡୁଳଂ)

ଦେହ ଏବଂ ମନୋବୁଦ୍ଧି

ତ୍ରିଧା ଜଡ ଶରୀରକ,

କର୍ତ୍ତା ଏଥିରୁ କେ ହେଲେ

ମୁଢି ଖାଏ କି ଚେତନ? ॥ 113

**L. Kabi 20220910**

ସରଳାର୍ଥ:-

ଶାସ୍ତ୍ର କହନ୍ତି: ଦେହୀର ତିନି ଶରୀର ଯଥା ଦେହ ସ୍ଥୂଳ ମନ ସୂକ୍ଷ୍ମ ଓ ବୁଦ୍ଧି ତଥା ଅହଂକାର ହେଲେ କାରଣ ଶରୀର । ପ୍ରାଣୀ ଯେଉଁ ସବୁ କ୍ରିୟା କରେ ସେଥିରେ ଏ ମଧ୍ୟରୁ କେହି ବି କର୍ତ୍ତା ବୋଲି ଭାବିବା ଠିକ୍ ନୁହେଁ । ତାତ୍ପର୍ଯ୍ୟ ହେଲା ଯଦି ଏହି ଜଡ ବା ନିଶ୍ଚେତନ ବସ୍ତୁ କେହି କର୍ତ୍ତା ହେଇ ପ୍ରଭୁ ପାଲଟି ଯିବି ତେବେ ସେହି ଦେହର ନିବାସୀ ଚେତନ ତତ୍ତ୍ୱ ଆତ୍ମା କଣ ସେଠି ମୁଢି ଚୋବାଇବାକୁ ବଇଛି?

ତର୍କସମ୍ମତ ରାସ୍ତାରେ

ଆସିବେ ଡାକ ଈଶ୍ୱରେ

ଅତର୍କିତ କୁହାଟେ ସେ

ଠୁକିବେ କର୍ଣ୍ଣମୂଳିଆ ॥ 114

ଦେଖି ନାହିଁ ଯିଏ ପୁଷ୍ପ

ତା ଫୁଲପ୍ରୀତି ଛାନ୍ଦିକ ।

ତଥା ଚ ଈଶ୍ୱରପ୍ରେମ,

ଅଧ୍ୟାତ୍ମଜ୍ଞାନଶୂନ୍ୟର ॥ 115

ସରଳାର୍ଥ:-

ଯେ କେବେ ଫୁଲ କଣ ଦେଖି ନାହିଁ ଫୁଲ କି ପଦାର୍ଥ ଜାଣି ନାହିଁ ସେ ଫୁଲକୁ ଭଲ ପାଏ କହିବା ଛାନ୍ଦିକ ଅର୍ଥାତ୍ **fraudulent,** କପଟପୂର୍ଣ୍ଣ । —-- ପୁଣି, କେହି ଆତ୍ମା କି ପରମାତ୍ମା ସମ୍ବନ୍ଧରେ କିଛି ନ ଜାଣି ବା ଗୁଡାଏ ଉଭଟ ମିଥ୍ୟା ଧାରଣାର ବଶବର୍ତ୍ତୀ ହେଇ ନିଜକୁ ଆସ୍ତିକ ବା ଈଶ୍ୱରବିଶ୍ୱାସୀ ବୋଲାଇବା ମଧ ସେହି ପରି ଶଠତାର ପରିଚୟ ।

**L. Kabi 20220911**

ହେଉ ଦ୍ୱୈତକ୍ଷମ ବ୍ୟଙ୍ଗ

ଶିଶୁ ବୃଦ୍ଧ ଅଭର୍ତ୍ତୃକା,

ରୋଗୀ ଅନାଥ ନିର୍ଦ୍ରବ୍ୟ

ଅସହାୟେ ଦୟା କର ॥ 116

**L. Kabi 20220912**

**Be a person trannsgender, handicapped, child, old in age, widow, diseased, orphan or penniless, pity that person.**

କର୍ତ୍ତା ଚେତନ କେବଳ
ହେଉ ଦୁର୍ବାର ସାମର୍ଥ୍ୟେ
ମହାକର୍ଷଣ ବିଶ୍ୱରେ ।
କର୍ତ୍ତା ସ୍ୱରୂପ ସେ ବୋଲି
ନ ପାଏ ଜଡ ମାନ୍ୟତା ॥ 117

ବ୍ରହ୍ମାଣ୍ଡପ୍ରାୟ ଏ ପିଣ୍ଡେ
ଅହଂବୁଦ୍ଧିମନେନ୍ଦ୍ରିୟେ
ଦେହେ ବି ଥାଇ ସାମର୍ଥ୍ୟ
କର୍ତ୍ତା ଦେହୀ ସଚେତନ ॥ 118

ପ୍ରତ୍ୟୟ ସୂକ୍ଷ୍ମ ଏ ଶାସ୍ତ୍ରେ
ବୁଝେ କେହି ବି ମାନବ,
ବୁଝି କେହି ରଖେ ଚିତ୍ତେ
ମୋହ ଜାଲେ ଭୁଲେ କିଏ ॥ 119

ମତିଭ୍ରମେ ଯିଏ ବିଦ୍ୟା
ଭୁଲେ ଚଞ୍ଚଳ ଶାସ୍ତ୍ରର
ଅଧିକ ଜ୍ଞାନ ତାହାକୁ
ଦେବାଟା ବେଦରେ ମନା ॥ 120

ସ୍ୱଚକ୍ଷେ ଦେଖ ଏ ଦେଶେ
ଜନଶକ୍ତି ମହାବଳୀ
ଜଡରାଜ୍ୟେ ରଜା କିନ୍ତୁ
ମୋଦୀମୂକେଶଗୌତମ ॥ 121

**L. Kabi 20220912**

ନାନାହସ୍ତାଦି ସଂଯୋଗେ
ଆସିଲେ ଦେବତା ସତେ,
ମରିବେ ଶକ୍ତ ଠେଙ୍ଗାରେ
ଓଲା ତନ୍ତୀ ମଲା ପରି ॥ 122

ନାହିଁ କେ ଅନ୍ୟ ପୃଥ୍ୱୀରେ
ଦାତା କୃପଣ ଯେସନ;
ଟଙ୍କାଟେ ନ ଛୁଏଁ ହାତେ,
ମଲେ ସେ ଲୁଣ୍ଠନେ ସରେ ॥ 123

**L. Kabi 20220919**

ନାନାହସ୍ତାଦି ସଂଯୋଗେ
ଆସିଲେ ଦେବତା ସତେ,
ମରିବେ ଶକ୍ତ ଠେଙ୍ଗାରେ
ଓଲା ତନ୍ତୀ ମଲା ପରି ॥ 124

**L. Kabi 20220919**

ଫମ୍ପାକଳଶ ଯେ ଭାବେ
କରେ ବହୁତ ଗର୍ଜନ,
ମଞ୍ଚରେ କବି ଗର୍ଜନ୍ତି -
ଆମେ ଦ୍ବିତୀୟ ଈଶ୍ୱର ॥ 125

ଏତେ ଈଶ୍ୱର ଯେ ଥାନ୍ତି,
ଆଗେ ନ ଥିଲି ଜାଣି ମୁଁ ।
ଯେତେ କବି ଶୁଣେ ସର୍ବେ
ଏକୁଟ୍ରା ଈଶ୍ୱର ବୋଲିକା ॥ 126

L. Kabi 20220921

ଫଟୋମର୍କଟ ସର୍ବତ୍ର
ଫଳାଶା ହେତୁ ପୂଜିତ ।
ଜୀନ୍ଦା ମର୍କଟ ଏ ନେତ୍ରେ
ପଡେ ନା ପୂଜିବାର କେ ॥ 127

ଦେଲେ ସଂସ୍କୃତରେ ଲେଖି

असत्यं न भवेत्सत्यं
संस्कृतेनापि योजितम् ।
संस्कृतस्य हि दुर्योगात्
नरकं याति पामरः ॥ 128

ଅସତ୍ୟ ନ ହୁଏ ସତ୍ୟ
ସଂସ୍କୃତେ ତାକୁ ଲେଖିଲେ ।
ଦେବଭାଷାର ଦୁର୍ଯୋଗେ
ସେ ପାପୀ ନରକେ ସଢେ ॥ 129

Untruth ne'er becomes real
Written in Sanskrit language.
Misusing lang of the deities
The sinner begets hell instead.

সংস্কৃতে কি লিখে থাক্লে
হবে সত্য় অসত্য়টি ৻
ভাষাদুর্য়োগ কারণে
পডে ও নরকে সিধা ৻ 131

संस्कृत्मे भि लिखो मिथ्य़ा
बद्ले न कभि सत्य़मे ।
भाषादुरुपय़ोग्से वह्
नरक्मे गिर्ता पामरः ॥ 134

Lalatendu Kabi 202210092041

ଥିଲେ ପରିଚିତା ଚିହ୍ନା
ନାରୀ କା ପାଖରେ ଜଣେ;
ମୂଢ ଦେଖାନ୍ତି ଷଣ୍ଢଢ଼,
ସ୍ୱମହତ୍ତା ପ୍ରକୀର୍ତ୍ତନେ । 135

**20221009**

ଧୀରେ ଧୀରେ ସିନା ବିଦ୍ୟା
ଶିଖିଲେ ଶିଖି ପାରିବ;
ଗିଳିଲେ ଏକ ଖେପାରେ
ଲାଗିବ ତଣ୍ଟିରେ ସବୁ ॥ 136

**L. Kabi 202210121010**

ଏହି ଆମ ରଜା
ସାମାଜିକ ସୁସମ୍ପର୍କେ
ଭୟାତୁର ରଜା ମନେ ।
ଘୃଣାପ୍ରସାର ତା ଶସ୍ତ୍ର
ନିର୍ବାଚନ ରଣାଙ୍ଗନେ ॥ ୧ 137

ଯେତେ ମୋଦୀ* ରଜା ବିଶ୍ୱେ
ନିକମ୍ମା ଗାଦିରେ ଛଳେ ।
ସଭିଙ୍କର ସମାବସ୍ଥା
ଏ ସାରା ମର୍ତ୍ତ୍ୟମଣ୍ଡଳେ ॥ ୨ 138

*ମୋଦୀ= ମଉଜୀ;*

ହିଟ୍‌ଲାର୍‌ଠାରୁ ରଜା କଂସ
ତଥା ରାକ୍ଷସ ରାବଣ
ଜରାସନ୍ଧ ନୁହେଁ ଭିନ୍ନ,
ସର୍ବାଗ୍ରେ ଆମ ରାଜନ ॥ ୩ 139

**L. Kabi** ୨୦୨୨୧୦୧୩

ଉତ୍କଳେ ଛନ୍ଦ ସଂଶପ୍ତ
କୋଡିଏ ନ ମିଳେ ନାମ
ଅତୀତେ ଛନ୍ଦକାରଙ୍କେ ।
ଆଶ୍ଚର୍ଯ୍ୟ ଉତ୍କଳେ ଛନ୍ଦ
ଶାପଗ୍ରସ୍ତ ଯୁଗେ ଯୁଗେ ॥1 140

ସଂଶପ୍ତ= ଅଭିଶପ୍ତ;

ଏବେ ଆମେ ଦଶବ୍ୟକ୍ତି
ଛନ୍ଦୋଦ୍ଧାରକ ସଂଯୁତ ।
ଛନ୍ଦୋଃହଲ୍ୟେ ! କିଏ ରାମ
ତୋତେ ଯେ ଦେବ ଜୀବନ ॥2 141

ସଂଯୁତ= ମିଳିତ, united;

ଲଲାଟେନ୍ଦୁ କବି **20221014**

ନିଃସ୍ବ ଓ ସମ୍ପନ୍ନ

ନିଃସ୍ୱ ନିଃସ୍ୱ, କହେ ଯେଣୁ

ସପ୍ତ ବ୍ରହ୍ମାଣ୍ଡ ମୋ ବଶେ ।

ହୁଏ ସମ୍ପନ୍ନ ସମ୍ପନ୍ନ

ଯେ ଭାଳେ ନିଃସ୍ୱ ବୋଲି ମୁଁ ॥(142

ତଥା ଅଭାବ ସାହିତ୍ୟେ

ମାନିଲେ ହେବ ଦୂରିତ ।

ନ ମାନିବ ଯିଏ ସତ୍ୟ

ଥିବ ନିର୍ଦ୍ରବ୍ୟ ସେ ସଦା ॥ 2 (143

କରିଚାଲ ମିଛେ ଗର୍ବ —

ସମସ୍ତ ପ୍ରାପ୍ତ ଆମରି ।

ଶିକ୍ଷା ନକରୁ ଓଡିଶା

ଛନ୍ଦ ବାର୍ଣ୍ଣିକ, ମାତ୍ରିକ ॥ 3 (144

ପାଠ୍ୟକ୍ରମେ ହିଁ ଅନ୍ୟତ୍ର

ଅଛି ଏ ଛନ୍ଦ ଲୌକିକ

ସଂଜ୍ଞା ଏଠି ନ ଜାଣନ୍ତୁ

ବୃଦ୍ଧକାଳେ ବି ଶିକ୍ଷକ ॥ 4 (145

ଯେ ପୁଛିଲେ - ବୁଝା ଛନ୍ଦ,

ଶିଖିଲେ ଲେଖିଲେ ତଥା;

ଦ୍ରୋହୀ ବୋଲି ଯିଏ ମୋତେ

ଶୋଦିଲେ, ଛନ୍ତି ଅଜ୍ଞ ସେ ॥ 5 (146

**L. Kabi 202220142357**

. ନୃତ୍ୟ

ସର୍ବେ ନାଚନ୍ତି ଭୂପୃଷ୍ଠେ,

ନରଫେରଣ୍ଡକୁକ୍କୁଟ ।

ସଲୀଳେ ମତ୍ସ୍ୟବର୍ଷାଭୂ,

ସଭାମଞ୍ଚରୁ ମର୍କଟ ॥ 1 147

ଗୋସ୍ୱାମୀ ଟିଭିରେ ନାଚେ,

ଶିଖୀ ଅମ୍ଭୋଦଗର୍ଜନେ ।

ବୈଦେଶ୍ୟଭ୍ରମଣେ ମୋଦୀ

ଭୂଦେବ ଖାଦ୍ୟଦର୍ଶନେ ॥2 148

ମୋହନା ତାଣ୍ଡବେ ମାତେ

ମୁସଲ୍‌ମାନ୍‌ରକ୍ତ ପାଇଲେ,

ଆସାରାମ୍ ପାଇଲେ ନାରୀ,

ରାମ୍‌ରହିମ୍ ଜେଲ୍‌ରୁ ଆସିଲେ ‖3 **149**

ନିର୍ମଳା ଜିଡିପି ହ୍ରାସେ

ଟେନୀ କର୍ଷକ ମାରିଲେ

ଆଡ୍ଭାନୀ ବିଜନେ ନାଚେ

ରାଜସିଂହାସନେ ଝୁରି ‖4 **150**

ଫେରଣ୍ଡକୁର୍କୁଟ= ଶିଆଳକୁକୁଡା; ବର୍ଷାଭୂ= ବେଙ୍ଗ; (ମର୍କଟ= ବକ୍ତା); ଗୋସ୍ୱାମୀ= ଅର୍ଣ୍ଣବ; ଅମ୍ଭୋଦ= ମେଘ; ମୋଦୀ= ଆମୋଦପ୍ରିୟ, ବିଳାସୀ; ଭୂଦେବ= ବ୍ରାହ୍ମଣ; ମୋହନାଲ= ଭାବତିଆ; ନିର୍ମଳା= ସୀତା; ଟେନୀ= ଅଜୁ'ନା; କର୍ଷକ= ଚାଷୀ;

**L. Kabi 202210161303**

ବୟସ ଓ ତୃଷ୍ଣା

ଆୟୁଚିହ୍ନ ମୁଖେ ସ୍ପଷ୍ଟ

କେଶ ପକ୍ୱ ବୟୋଗତେ

ଜୀର୍ଣ୍ଣ ଦୁର୍ବଳ ସର୍ବାଙ୍ଗ,

ତୃଷ୍ଣୈକା ନିତ୍ୟଯୌବନା ‖ 1 **151**

ଅଥବା 🙏🙏🙏

ଦନ୍ତ ଦୁର୍ବଳ ବାର୍ଦ୍ଧକ୍ୟେ,

କେଶ ଶୁଭ୍ର ଶିରେ ତଥା

ଚକ୍ଷୁ କର୍ଣ୍ଣାଦି ନିସ୍ତେଜ,

ନିତ୍ୟ ବର୍ଦ୍ଧିତ ବାସନା ‖2 **152**

ଲଲାଟେନ୍ଦୁ କବି

ଦେବୀଙ୍କୁ ପୂଜି ଅକ୍ଲାନ୍ତ

ଆଲୋକେ ଭରି ଏ ଧରା

ନ ଯାଏ ପାପ ଭୂଛାୟା

ନିଜେ ଯେଣୁ ନିରୁଦ୍ୟମୀ ‖ **153**

ଦଙ୍ଗାଭାଷା ତଥା ମିଥ୍ୟା

ଜିତାଏ ନାହିଁ ସର୍ବଦା ।

ଯେ ଥିଲା ଦମ୍ଭ ଗୋଷ୍ଠୀରେ

ସେ ମୌସା ବୋଝ ସେ ଦଳେ ‖**154**

ପ୍ରଭାତେ ଭାଜିଲେ ନିଦ୍ରା

ଦେଶୀ କୁକ୍କୁର ବସ୍ତିରେ

କପାଳଭାତିରେ ବ୍ୟସ୍ତ,

ତସଙ୍ଗେ ରାମଦେବ୍ ତଥା ‖ **155**

**L. Kabi 202210180941**

ଧୀରେ ଧୀରେ ସିନା ବିଦ୍ୟା
ଶିଖିଲେ ଶିଖି ପାରିବ;
ଗିଳିଲେ ଏକ ଖେପାରେ
ସବୁ ଲାଗିବ ତଣ୍ଟିରେ ॥ 156

ଆଜୀବନ ପ୍ରଜାପାଳି
ହେଲେ ଶ୍ରୀରାମ ପୂଜିତ ।
ସଂପ୍ରଦାୟେ ଭରି ଦ୍ୱେଷ
ଏ ହେବେ ଚିର ଲାଞ୍ଛିତ ॥ 157

L. Kabi 202210220941

ଦୃଗ୍ଜଳେ ତୋ ଝରେ ମୁକ୍ତା
ରୋଦନେ କାବ୍ୟ ଉଚ୍ଛଳ;
ଶବ୍ଦ ମାତ୍ରକ ନିର୍ମୋକେ
ଜଳଦେ ଜଳ କେବଳ ॥ 158

ତୋ ଆଖିପାଣିରେ ମୁକ୍ତା ଝରୁଛି, ତୋ କ୍ରନ୍ଦନ ଧ୍ୱନିରେ କାବ୍ୟ ଝଙ୍କୃତ ହେଉଛି । ଅପର ପକ୍ଷରେ ସମୁଦ୍ରରେ କେବଳ ପାଣି ଅଛି । (ସେଥିରେ ମୁକ୍ତା କାହିଁ ?) ଆକାଶରେ କେବଳ ଶବ୍ଦର ସ୍ପନ୍ଦନ ଅଛି । (ସେଥିରେ ସଂଗୀତ କାହିଁ?)

L. Kabi 20221023

ସାଫଲ୍ୟ ଥାଇ ପାରେ ମୋ
ନିର୍ଭର ପ୍ରଭୁ ଆଶ୍ରୟେ
ଉଦ୍ୟମ ମୋ ପରେ ନ୍ୟସ୍ତ
ତେଣୁ ମୁଁ ବ୍ୟସ୍ତ ସର୍ବଦା ॥ 159

L. Kabi 20221023

ପନ୍ଦର ଲକ୍ଷ

ଲକ୍ଷ ପନ୍ଦର ଲେଖାଏ
କାହୁଁ ବାଣ୍ଟନ୍ତ ରାଜନ !
କଷି ଦେଖିଛ ସେ ଟଙ୍କା
ବଜେଟ ଶତବର୍ଷର ॥ 160

ଠକିବା ଲାଗି ମୂର୍ଖଙ୍କୁ
ତୁମେ ଜନ୍ମିତ ଭାରତେ,
ଶେଷ ଆଶା ନିକମ୍ମାଙ୍କ,
ଶେଷ ଗଦ୍ଧା'ର ଦେବତା ॥ 161

L. Kabi 20221024

ସୁଷୁପ୍ତି ଶୂନ୍ୟହିନ୍ଦୋଳେ
ଅଲଭ୍ୟ ମଧୁକଳ୍ପନା ।
ବୃକ୍ଷାଗ୍ରେ ନ ଫଳେ ଟଙ୍କା,
ଛନ୍ଦ ଶୂନ୍ୟ ପ୍ରଶିକ୍ଷଣେ ॥ 162

L. Kabi 20221023

## ବ୍ରହ୍ମାଣ୍ଡ ବିଜୟୀ

ଭକ୍ତେ କହନ୍ତି ଏ ଦେଶେ
ନ ଥିଲା ଜହ୍ନ ପୂର୍ବରୁ ।
ମହା ପରାକ୍ରମେ ମୌସା
ଜହ୍ନ ଆଣିଛି ଶୂନ୍ୟରୁ ॥1 163

ତା ଛଡା ପ୍ରଥମେ ଜହ୍ନ
ଘୂରିଲା ନାହିଁ କକ୍ଷରେ
ମାରି ଏକ ବିଧା ମୌସା
ଦେଲା ଘୂରାଇ ସତ୍ୱରେ ॥2 164

ତେରେଛା ପ୍ରଥମେ ଜହ୍ନ
ଘୂରିଲା କରି ଗର୍ଜନ
ନଗୀରେ ଖେଞ୍ଚି ମୋ ମୌସା
କଲା ତାକୁ ନିୟନ୍ତ୍ରଣ ॥3 165

ପୌର୍ଣ୍ଣମାସୀ ଅମାବାସ୍ୟା
ସେ କାଳୁ ଅନୁଶାସନେ
ମାସକେ ଥରଟେ ଲେଖା
ଆସେ ଆକାଶ ଅଙ୍ଗନେ ॥4 166

କୃଷ୍ଣ ପକ୍ଷ ତଥା ଶୁକ୍ଳ
ଦି ଭାଗେ ବାଣ୍ଟି ଏମିତି
ମୌସା ଗଢିଛି ଉତ୍ସାହେ
ଛୋଟିଆ ଛୋଟିଆ ତିଥି ॥5 167

ଛୋଟିଆ ତିଥି ମଧ୍ୟେ ସେ
ବେଳା ତାହାଠୁ ଛୋଟିଆ
ଖଞ୍ଜି ପାରିଛି ନୈପୁଣ୍ୟେ
ବେଟୁନନ୍ଦନ ଦାଢିଆ ॥6 168

ଛୁଆଏ ହସିବେ ବୋଲି
ଜହ୍ନରେ ଦେଖି ଠେକୁଆ
ସ୍କୃ ଯୋଗେ ପୃଥିବୀ ଆଡେ
ଶଶା ରଖିଛି ଫେକୁଆ ॥ 7 169

ମଉସା କୀର୍ତ୍ତି ଏ ଭାବେ
ଥାଏ ଅନ୍ଧଙ୍କ ଆନନେ
ଭୂତଳେ ଖାଦ୍ୟ ସୂଚୀରେ
ବ୍ରହ୍ମାଣ୍ଡବିଜୟୀ ମନେ ॥8 170

**L. Kabi 20221027**

ନାମ ଆମ ମହାତ୍ମାଙ୍କ
ରାସ୍ତାକୁ ଦିଅନା ଜମା ।
ସର୍ବେ ଜାଣନ୍ତି ଏ ଦେଶେ
କୁତ୍ତା ମୂତନ୍ତି ମାର୍ଗରେ । 171

ତୈମୂର୍ଲଂ ସୋମବଂଶୀୟ
ତୋଗଲୋକ୍ ଆର୍ଯ୍ୟଗୌରବ
ଲେଖିଦେଲେ ବି ଯା ସତ୍ୟ
ସତ୍ୟ ସେ ଥିବ ସର୍ବଥା । 172

L. Kabi 20221027

ନ୍ୟାଯ୍ୟ ଦାବି

ଚା ପାନେ ସରିଲା କ୍ଷୀର
କି ଯେ କରିବି ୟା ପରେ ।
ସରେ ନା ଶୀଘ୍ର ଏ ରାତି,
ଅନ୍ଧକାର ଗଲେ ସରେ । 1 173
କିଜ ଖଲା ତମିସ୍ରାର
ମନା ଦିବସ ଆସିବା?
ସମସ୍ତେ ଚାଲ ଏକତ୍ର
ଏ ରୀତି ବଦଳାଇବା ।2 174
ଦିନ ହେବ ନିଶାର୍ଦ୍ଧେ ବି
ମଧ୍ୟାହ୍ନେ ହେବ ଶର୍ବରୀ,
ସର୍ବଦା ଆମ ଇଚ୍ଛାରେ
ହେବ ପ୍ରହର ଆମରି । 3 175
ମରୁ ମେରୁ ନଦୀ ସିନ୍ଧୁ
ସର୍ବତ୍ର ଥିବ ଏ ସବୁ,
ତାହା ମଧେ କୃଷି କ୍ଷେତ୍ର,
ଫଳ ହାତ-ପାହାନ୍ତିରେ । 4 176
ଛୋଟ ଏ ନ୍ୟାଯ୍ୟ ମୋ ଦାବି
ଯେବେ ନ ହେବ ପୂରଣ,
ତୁମ ଅଧୀନରେ କିମ୍ପା
ଥିବି, ନାହିଁ ଯଥାର୍ଥତା । 5 177
ତୁମକୁ କେ କଲା ରାଜା,
ଦାଉ ସାଧୁଛ ଆମଠି,
ନାଛ ତାକୁ ନ ମିନଜ ଯେ,
ବିଚିତ୍ର ଭାରି ଏ କଥା । 6 178
ମୋଦୀ କି ଇନ୍ଦିରା ଶ୍ରେଷ୍ଠ,
ଅନେକ ମତ ଆସିବ;
ଶୁଣିଲେ ଅନ୍ୟର ଶଂସା
ତୁମେ ତାହାକୁ ନାଛିବ । 7 179
କେତେ ମାରିଛ ଦୈତ୍ୟଙ୍କୁ
ମାନିଲା ନାହିଁ ବୋଲିକା ।
ଏ ଦାଦାଗିରି ଏ ଦେଶେ
ସରିଲା ଜାଣ ଏଣିକି । 8 180

L. Kabi 20221104

ଭିନ୍ନ ଧର୍ମଠୁ ବିଜ୍ଞାନ,
ପୃଥକ୍ ବିଦ୍ୟା ଦୁହିଁଙ୍କର ।
ଯଜ୍ଞକାର୍ଯ୍ୟେ କି ବିଜ୍ଞାନୀ
ଶୂନ୍ୟଯାନେ କି ପଣ୍ଡିତ । 181

L. Kabi 20221105

କମ୍ରା ପ୍ରସୂନିକା ମଧ୍ୟେ
କୀଟ ବିଷାକ୍ତ ଯେସନ,
ମିଷ୍ଟ ବାକ୍ୟର ଆଚ୍ଛାଦେ
ଥିବା ସମ୍ଭବ ତିକ୍ତତା । 182

L. Kabi 20221106

ହୁଅ ଧର୍ମଜ୍ଞ ଧର୍ମାନ୍ଧ
ଧର୍ମଜ୍ଞାନାଗ୍ରହୀ ଅବା,
ଭିନ୍ନ ଯାହାର ବିଶ୍ୱାସ
ତା ନିନ୍ଦା ଗର୍ବ କେବଳ । 183

କର ନିନ୍ଦା ସିଧା ବାକ୍ୟେ
ଅବା ମାର୍ଜିତ ଶବ୍ଦରେ
ନୁହେଁ ଧାର୍ମିକ ଯା ଚିତ୍ତେ
ଅସୂୟା ଭିନ୍ନ ଚିନ୍ତକେ । 184

ସ୍ୱେଚ୍ଛାରେ ଭାବି ପାରେନା
ନୁହେଁ ସ୍ୱାଧୀନ ଚିନ୍ତନେ ।
ପର ସ୍ୱାଧୀନତା ରକ୍ଷା
କାହିଁ ଧର୍ମାନ୍ଧ ହାତରେ । 185

ମତାନ୍ଧ ଭାବି ପାରେନା
ବହିରେ ନାହିଁ ଯେ କଥା,
ଭିନ୍ନ ଭାବନ କାହାର
ସହେ ନା ହୀନଚେତସ । 186

L. Kabi 20221106

ଚାହେଁ ନାହି ଧନୀ କେବେ
ହେବ ସେ ବୋଲି ନିର୍ଦ୍ଧନ;
ଦରିଦ୍ର ସର୍ବଥା ଚାହେଁ
ନିଜ ନୈର୍ଦ୍ଧନ୍ୟମୋଚନ । 187

L. Kabi 20221106

ବଜାଇ ଶଙ୍ଖ ମୋ ମୌସା !
ଡାକି ନେଇଛ କୀଳକ ।
ମିଡିଆ ଅତି ଦୁର୍ଯୋଗେ
ନାହିଁ ବିଶ୍ୱାସଭାଜନ । 188

କି ଭାବେ ମିଛ ସମ୍ବାଦେ
ଜନେ ଠକିବ ଆଗକୁ?
ଟିଭି, କାଗଜରେ ଆସ୍ଥା
ସଭିଙ୍କ ତୁଟି ଯାଇଛି । 189

L. Kabi 20221106

ଚିକିତ୍ସା ଓ ପରମାୟୁ

ସେବି ଔଷଧି ଯେ ବଞ୍ଚେ
ନୁହେଁ ସେ ଲାଗି ଦଣ୍ଡିତ;
ମରିଲେ ସ୍ୱାସ୍ଥ୍ୟହେଳାରୁ
ଯମ ଠୁଙ୍କିବ ଲଙ୍ଗଳା ॥ 190

ମହାଭଣ୍ଡ ଦିଏ ବୁଦ୍ଧି
ଚିକିତ୍ସା ତେଜି ସର୍ବଶଃ
ପଶୁମୂତ୍ରମଳାହାରେ
ହୁଅ ଆରୋଗ୍ୟ ମାନବ ॥ 191

ସ୍ୱର୍ଗରେ ଦୁଃଖଜୀବନ

ନାହିଁ ଚାଷଜମି ସ୍ୱର୍ଗେ
କପା ନାହିଁ କି ଶାଲ୍ମଳୀ,
ନ ଥାଇ ବଣିଆ ତନ୍ତୀ
ବସ୍ତ୍ରାଳଙ୍କାର କେ ଦିଏ ॥ 192

ନାହିଁ ଗାଈ ଅବା ଗୌଡ
ଦୁହିଁବା ଲାଗି ଧେନୁକେ,
ହୋମଯଜ୍ଞାଦି କେ ସାଧେ
ବିନା ଘିଅ ଦିଆସିଲେ ॥ 193

ଦୈବୀ ବିବାହ

ପରସ୍ପରେ କରି ଶ୍ରଦ୍ଧା
ବିବାହ ପ୍ରେମ ବନ୍ଧନ ।
ତଣ୍ଡିଆ ମାରି ଅଜ୍ଞାତେ
ଛନ୍ଦିବାଟା ପରମ୍ପରା ॥ 194

ମନୁଷ୍ୟର ବିଭା କାଳେ
ହୁଏ ସ୍ୱର୍ଗେ ସ୍ଥିରୀକୃତ,
ଅବିବାହିତ ଅର୍ଦ୍ଧେକ
କିମ୍ବା ସେଠା ନିବାସକେ ॥ 195

ମିଳେ ନା ବର ବା କନ୍ଯା
ଅଭଡା କୋଟି ଦେବତା
ମର୍ତ୍ତ୍ୟେ କେ ଯିବ କା ସାଙ୍ଗେ
ପୀଡା ସେ ଲାଗି ମସ୍ତକେ 196

**L. Kabi 20221106**

ରାହୁକେତୁ କଥା

ରାହୁକେତୁଙ୍କ ଥାଏ କି
ଗ୍ରହଣେ ପାକବାରଣ?
ଗ୍ରହଣ ସରିବାରେ ବି
କରନ୍ତି ସ୍ନାନ କେଉଁଠି? 197

ପ୍ରକାଣ୍ଡ ସୂର୍ଯ୍ୟଚନ୍ଦ୍ରଙ୍କୁ
ଗ୍ରହଣେ ଠୁସି ପେଟରେ
ନୀରୋଗ ରାହୁ ଓ କେତୁ,
ମୁଁ ତ ସମାନ୍ୟ ଖାଦକ ॥ 198

ବିଦେଶେ ଗ୍ରହଣେ ଖାଇ,
ବିଗିଡେ ନାହିଁ ପେଟଟେ,
କରନ୍ତି ସେ ଦୁହେଁ କିମ୍ପାଁ
ଭାରତେ ପେଟମନ୍ଥନ ॥ 199

ବିଦେଶେ ରାହୁକେତୁଙ୍କ
ଶୁଣା ନାହିଁ ଉପଦ୍ରବ,
ଆମ ପେଟ ବିଗାଡନ୍ତି,
ପାପୀ ଆମେ କି କେବଳ? 200

ଆଡ୍ଭାନୀ-ମଉସା କଥା

ଗାଦି ଆଶା କଲେ ତ୍ୟାଗ
ନ ଲାଗେ ମଉସା ତିଳେ ।
ଆଡ୍ଭାନୀଙ୍କୁ ବି ଦେଖ ଯା
ବଞ୍ଚାଇଅଛି ପିଞ୍ଜରେ ॥ 201

**L. Kabi 20221117**

ଗାଈର ପଘା

ମନୁଷ୍ୟ ଦୌଡି ଭୂଭାଗେ
ଗୋମାତା ବେକରେ ଲଗା ।
ଗୋମାତା ଦୌଡିଲେ ଆଗେ
ଘୁଷୁରେ ସଙ୍ଗରେ ପଘା ॥ 202

**L. Kabi 20221128**

ଭେଦଭାବ କଲେ ଦେଶେ
ହୁଏ ସେ ଦେଶ ଖଣ୍ଡିତ ।
ଯୋଡି ଶ୍ରଦ୍ଧା ବଳେ ଶେଷେ
କର ଦ୍ୱେଷୀଙ୍କୁ ଦଣ୍ଡିତ ॥ 203

ରଙ୍ଗା-ବିଲ୍ଲା ରଜାମନ୍ତ୍ରୀ
ପିଣ୍ଡାରୀ ଦଳ ସେବକ ।
ଜାଗ ସର୍ବେ ସଦାଚାରୀ
ଛେଦ ଏହାଙ୍କ ମସ୍ତକ ॥ 204

ଶିଖୀମନାଇ ଏ ଦେଶେ
ଡାକନ୍ତି ବୈର ଶାସନେ ।
ଫେକୁଆ ଦେଶ ବିକ୍ରେତା,
ଅନ୍ଧଭକ୍ତ ସମର୍ଥନେ ॥ 205

**L. Kabi 20221128**

ଧର୍ମ ନାମେ ଗଢି ଦ୍ୱେଷୀ
ଯେ ତୋଳେ କନ୍ଦଳଧ୍ୱଜା,
ଜନେ ମରାଇ ଦଙ୍ଗାରେ
ସେ ହୁଏ ଦେଶରେ ରଜା ॥ 206

ରଖିଥା ଚିହ୍ନି ଏହାଙ୍କୁ,
ଧରିବେ ପାଦ ନିଶ୍ଚୟ,
ସମର୍ଥନ କଲେ ଭିକ୍ଷା
ଠେଙ୍ଗାରେ ପିଟ ନିର୍ଦ୍ଦୟ ॥ 207

**L. Kabi 20221201**

ୱିଫେ ଓ ହୁସ୍‌ବନ୍ଦ

ୱିଫେ-ହୁସ୍‌ବନ୍ଦ ଯୋଡାରେ
ଥିଲେ ଅଚ୍ଛେଦ୍ୟ ବନ୍ଧନ ।
ଥିବେ ସନ୍ତାନ ଆନନ୍ଦେ,
ଫେମିଲୀ ହେବ ଲନ୍ଦନ ॥ **208**

***ୱିଫେ= wife; ହୁସ୍‌ବନ୍ଦ= husband; ଡିଓ= couple; ଲନ୍ଦନ= London;***

**L. Kabi 202212011444**

ସର୍ବଭୂତେ

ସର୍ବଭୂତେ ପରଂବ୍ରହ୍ମ
ଶିଖାଏ ଶାସ୍ତ୍ର ଆମର ।
ଯେ କରେ ଅନ୍ୟକୁ ଦ୍ୱେଷ
ସେ ନୁହେଁ ହିନ୍ଦୁ ମାତର ॥ **209**

**L. Kabi 20221201**

ଏକା ଶବ୍ଦେ ପରିଜ୍ଞାତ
ଭିକ୍ଷାର୍ଥୀ ଭୂମିପାଳକ,
ତେଣୁ ରାଜାଙ୍କୁ ଭିକ୍ଷାର୍ଥୀ
କଲା ଏ ସତ୍ୟ ଭାଷଣ ॥ **210**

ତୁମେ ଯା, ମୁଁ ବି ରାଜେନ୍ଦ୍ର !
ଉଭୟେ ଲୋକନାଥ ହିଁ ।
ବହୁବ୍ରୀହି ସମାସେ ମୁଁ
ଷଷ୍ଠୀ ତତ୍ପୁରୁଷେ ତୁମେ ॥ **211**

ବହୁବ୍ରୀହି= (ଭିକ ଦେଉଥିବା) ଲୋକମାନେ ନାଥ ଯାହାର, ସେ; ଷଷ୍ଠୀ ତତ୍ପୁରୁଷ= ଲୋକଙ୍କ ନାଥ;

**L. Kabi 20221203**

ପ୍ରାଣୀ ଦେଖି ହସେ ବାଘ,

ପତଙ୍ଗୀ ପକ୍ଷଚାଳନେ ।

ତୃଣଭୂମେ ହସେ ଛାଗ,

ଆରକ୍ଷୀ ଚୋରଦର୍ଶନେ ॥ 212

*ପତଙ୍ଗୀ= (ପୁଂ) ପକ୍ଷୀ;*

*ଆରକ୍ଷୀ= (ପୁଂ) ପୋଲିସ୍;*

ଅଦୃଶ୍ୟ ପ୍ରବହେ ବାୟୁ

ଅଦୃଶ୍ୟ ଶ୍ରାମ ଧାବନ (ଶ୍ରାମ= ସମୟ;)

ଅଦୃଶ୍ୟ ନିଃସରେ ଆୟୁ

ଅଦୃଶ୍ୟ ସତ୍ୟବୋଧନ ॥ 213

ନିଃଶବ୍ଦେ ଔଷସୀ ଆସେ

ନିଃଶବ୍ଦେ ପୁଷ୍ପମୋଚନ ।

ମୌନେ ତର୍କସ୍ଥ ବିଜ୍ଞାନୀ

ମୌନେ କଲ୍ୟାଣ କଳ୍ପନ ॥ 214

**L. Kabi 20221226**

ଅନେକେ ତୁଳସୀ ପ୍ରାୟେ

ବାସନ୍ତି ଦୁଇ ପତ୍ରରୁ ।

କି ଗନ୍ଧ ଅଛି କାହାର:

କାହିଁ ଚିହ୍ନାଇବା ଜନ॥ 215

**L. Kabi 20221226**

ଯେଉଁ ଦେଶେ ଅଶୀ କୋଟି

ଜୀବନେ ଦାନ ଧାନ୍ୟକେ/ ଚାଉଳେ,

ସେ ଦେଶେ ଦୁଷ୍ଟ ରାଜାର

ବସ୍ତ୍ର ପ୍ରତ୍ୟେକ କୋଟିଏ ॥ 216

**L. Kabi 20221227**

ଟି ସାର୍ଟ୍ ମାତ୍ର ବିନା ଗଞ୍ଜି

ରାଜନନ୍ଦନ ରାହୁଳ ।

ରାଜକୀୟ ମହାବସ୍ତ୍ରେ

ମୋଦୀ କାଙ୍ଗାଳ ନିର୍ଦ୍ଧନ ॥ 217

**L. Kabi 20221227**

ବିକି ଏ ରାଷ୍ଟ୍ରସଂପତ୍ତି

କିଣିଲା ବାଘ ଆଠଟି

ମହାନନ୍ଦେ ଉଡେ ରାଜା

ନାହିଁ ଦୀନୋଦରେ ରୁଟି ॥ 218

*ଦୀନୋଦର= ଗରିବପେଟ;*

**L. Kabi 20221227**

ତାହା ବିକୁଥିଲା କାଳେ
ଧନହୀନ ଥିଲା ଦିନେ;
ସ୍ୱଦାରିଦ୍ର୍ୟ ପ୍ରଚାରେ ତା
ଘଣ୍ଟାକେ ଖର୍ଚ୍ଚ କୋଟିଏ ‖ 219

**L. Kabi 20221227**

ପ୍ରଜାଙ୍କ ଭିତରେ ଐକ୍ୟ
ରାଜାର ଶ୍ରେଷ୍ଠ ସାୟକ (ଖଣ୍ଡା) ।
ଏକତା ନାଶି ଫେକୁଶ୍ରୀ
ଭଗ୍ନଖଣ୍ଡ ରଣାଙ୍ଗନେ ‖ 220

**L. Kabi 20221227**

ଦିଆସିଲି କାଠି କ୍ରୋଧ
ଜାଳି ପାରେ ମହାବନ ।
ଆନେ ଜଳାଇବା ପୂର୍ବେ
ଜଳେ ତା ନିଜ ଆନନ ‖ 221

**L. Kabi 20221229**

ସତ୍ୟାସତ୍ୟ ମହାଯୁଦ୍ଧେ
ସର୍ବଦା ବିଜୟୀ ମିଥ୍ୟା
ସତ୍ୟାସତ୍ୟ ରଣାଙ୍ଗନେ ।
କଦବା ଜିତିଲେ ସତ୍ୟ
ଜନେ ଲେଖନ୍ତି ପୁସ୍ତକେ ‖ 222

ଦେଖି ଦେଖି ହସେ ମିଥ୍ୟା -
ସର୍ବଦା ଉପରେ ମୁହିଁ ।
କଦବା ନିମିଷେ ଲାଗି
ଜିତୁ ସେ, ନାଚୁ ମାନବ ‖ 223

ଏହା ହିଁ ସର୍ବଦା ଚାଲେ
ଭାବନାରେ ଯୁଗେ ଯୁଗେ:
ସତ୍ୟ ଜୈତ୍ର କ୍ଷଣସ୍ଥାୟୀ,
ଇଚ୍ଛା କରି ଭୁଲେ ନର ‖ 224

**L. Kabi 20221229**

ଗେରେଣ୍ଟୀ ନାହିଁ ସର୍ବଦା
କିଏ ଲେଖେ ଯଥା ଇଚ୍ଛା
କିଏ ବା ଶିଖିଲା ପରେ ।
ନ ଜାଣି ଲେଖିଲାବାଲା
ଫସି ଯାଏ ଥରେ ଥରେ ‖ 225

ଲୁଚି ଚୋର କରେ ଚୋରୀ
ଖସେ ତା ଭାଗ୍ୟରେ ଥିଲେ |
ଧରା ହେଲେ କୁଟେ ରକ୍ଷୀ -
ଯା ଠେଙ୍ଗାରେ ଲୁହା କିଲେ ‖226

ସେ ହେତୁ କରନା ଚୋରୀ
ଲେଖା କେହି ବି ଅନ୍ୟର
କେ ଦେବେ ଠୁଙ୍କି ପାହାରେ
ଜାଣିଲେ କାର୍ଯ୍ୟ ତୁମ୍ଭର ll **227**

ଯାନ ଆଖିବୁଜା ଚାଳି
ଅପଘାତ ନ ଆସିଛି
ମାନେ ତାର ନୁହେଁ ଧାତା
ଗେରେଣ୍ଟୀ ଲେଖିଦେଇଛି ll **228**

**L. Kabi 20230112**

ଠକରାଜା ଓ ଅନ୍ଧପୁତ୍ର

ଗୋଟିକି ଗୋଟି ରାଜାର
ଶଠତା ପଡିଲେ ଧରା
ସହଜେ ତ ରଜା ରାଗେ
ଚାମୁଚା ବେଶି ବିବ୍ରତ ll **229**

ସାଂବିଧାନିକ ସଂସ୍ଥାଏ
ସିଂହାସନ ଖୁରା ସମ ।
ସ୍ୱହିତେ ତାକୁ ରାଜାଏ
ରଖନ୍ତି ଅତି ଯତ୍ନରେ ll **230**

ହତବୁଦ୍ଧି ରଜା ଦେଶେ
ସେ  ସଂସ୍ଥାଙ୍କୁ ଦବାଉଛି,
ଭାଙ୍ଗିଚାଲେ ପିଚାତଳେ
ନିଜ ଚୌକିର ଯା ଖୁରା ll **231**

ଅନ୍ଧଭକ୍ତେ ବ୍ୟତିବ୍ୟସ୍ତ
ସମକ୍ଷେ ଦେଖି ଆଖିରେ
ସିଂହାସନ ଖୁରା ଭଙ୍ଗା
କଚଡା ଖାଇବେ ରଜା ll **232**

**L. Kabi 20230123**

ବିରାଡିଗର୍ଭରେ କେବେ
ନ ଥାଏ ବ୍ୟାଘ୍ରଶାବକ ।
ତ୍ରୁଟିପୂର୍ଣ୍ଣ ଥିଲେ ଶବ୍ଦ
ଆସେ ନା ଭାବ ସାର୍ଥକ ll **233**

**L. Kabi 20230125**

ଶିଳାରେ ଅର୍ଚ୍ଚନାପୀଠ
ମାନବ ସ୍ୱହିତେ ଗଢେ ।
ନୁହେଁ ଆଳୟ ତା ସ୍ରଷ୍ଟା
ସ୍ୱଦେହର ଶିଳାହିତେ ll **234**

**L. Kabi 20230126**

ପଥରରେ ପ୍ରାଣ

**धूपचन्दनसंयोगात्**

**उपले जीवनं कुतः**

**भभेद्यदि कुतः नाहं**

**पूजयिष्यामि पर्वतम् ॥ 235**

**L. Kabi 20230127**

ଧୂପଚନ୍ଦନସଂଯୋଗେ

ଶୈଳେ ପ୍ରାଣ ନ ସଞ୍ଚରେ ।

ଯଦି ବା ସଞ୍ଚରେ କିମ୍ପାଁ

ନ ପୂଜିବି ମହୀଧ୍ରକୁ ॥ **236**

*ଦୃଷ୍ଦ= ପଥର;*

**L. Kabi 20230127**

ରାଜା

ଉଦାର ଭୂପ ସମ୍ପୂଜ୍ୟ

ବିଦେଶେ ବୀର ଶଙ୍କିତ ।

ଶ୍ରଦ୍ଧାଯୋଗ୍ୟ ପ୍ରଜାପାଳୀ

ହିଂସ୍ର ରାଜା ବିପର୍ଯ୍ୟୟ ॥ **237**

ନେହେରୁ ବାଜପେୟୀଙ୍କ

ଔଦାର୍ଯ୍ୟେ ବିଶ୍ୱ ଗର୍ବିତ ।

ବୀରତ୍ୱେ ଇନ୍ଦିରା ଗଣ୍ୟା

ହିଂସ୍ର ନେତା ବିପର୍ଯ୍ୟୟ ॥ **238**

**L. Kabi 202303330**

ଭଣ୍ଡଗୁରୁଙ୍କ ଉତ୍ପତ୍ତିସ୍ଥଳ

ଭଣ୍ଡ ଯେ ଗୁରୁ ଅଦ୍ୟାପି

ଭଣ୍ଡ ଶିଷ୍ୟ ଥିଲା ଦିନେ ।

ଭଣ୍ଡ ଶିଷ୍ୟ ଥିଲେ ଜୀନ୍ଦା

ଭଣ୍ଡ ବାବା ହିଁ ଜନ୍ମିବେ ॥ **239**

*ଅଦ୍ୟାପି=ଠିକ୍ ବର୍ତ୍ତମାନ;*

**L.Kabi 20180325**

ଭଣ୍ଡଶିଷ୍ୟ ହିଁ କଞ୍ଚାମାଲ୍

ଭଣ୍ଡ ବାବା ଫଳାଗମ ।

ଭଣ୍ଡଶିଷ୍ୟେ କଲେ ନାଶ

ଭଣ୍ଡ ବାବା ନ ଜନ୍ମିବେ ॥ **240**

***ଫଳାଗମ=final product;***

**L.Kabi 20230330**

ହିଟ୍ଲାରୀ ସୂତ୍ର ସଂକ୍ଷେପେ

ପ୍ରଜାପୀଡକ ସର୍ବାଗ୍ରେ
ନାଶେ ନିଜର ଭକ୍ତକୁ
ଚୁଣ୍ଟି ଗୋବର ତା ମାଥେ,
ଆଖିରେ ଫୋଡି କଣ୍ଟକ ॥ 242

ବିନାଶି ବୁଦ୍ଧି ତା ମାଥେ
ଅଥର୍ବ କରିବା ପରେ
ଅନ୍ଧପୁତ୍ରକ ସମ୍ମୋହଜ
କରେ ଆଦ୍ଭୁତ ଦର୍ଶନ ॥ 242

ପାଇଖାନା ଘରେ ଦେଖି
ମହାବିଷ୍ଠା ରଜାଙ୍କର
କହେ ଅନ୍ଧଛୁଆ ମୂର୍ଖ -
ଧନ୍ୟ ଏ ରାଜଲଣ୍ଡିକା ॥ 243

ଅନ୍ଧଭକ୍ତ ରହେ ବଞ୍ଚି
ବିକଳାଙ୍ଗ କଳେବରେ
ଖର୍ପରେ ଗୋବରସ୍ତୂପ
ମିଥ୍ୟାରେ ପୂର୍ଣ୍ଣ ଜିହ୍ଵକ ॥ 244

**L. Kabi 202301020700**

ମୂର୍ଖ ରାଜା ଗୁଣୀ ରାଜା

ବାଣୀପୁତ୍ର କହେ ଏହା
ମୂର୍ଖରାଜାର ଲକ୍ଷଣ
ଶିକ୍ଷାଦୀକ୍ଷା ବିନା ତୁଚ୍ଛା
ପ୍ରଚ୍ଛନ୍ନା ହୀନମନ୍ୟତା ॥ 245

ଗୁଣିରାଜା ରହେ ବ୍ୟସ୍ତ
ପ୍ରଜାକଲ୍ୟାଣସାଧନେ ।
ଦୁଷ୍ଟରାଜା ସଦା ଲିପ୍ତ
ମୁକ୍ତଚିନ୍ତକତାଡନେ ॥ 246

**vANIputra 202304041959**

ସ୍ଵାଦିଷ୍ଟ ଛନ୍ଦରେ କାବ୍ୟ

ସ୍ଵାଦିଷ୍ଟ ସଂସ୍କୃତେ ଛନ୍ଦ -
କଥାଟି ନୁହଁ ସେପରି ।
ଛନ୍ଦ ହେତୁ ମିଠା ତାହା
କବିତା ଲେଖ ଛନ୍ଦରେ ॥ 247

**L. Kabi 20230406**

ଭାଷାଜ୍ଞାନେ ଖଡାନାସ୍ତି
ପ୍ରୋତ୍ସାହନ ବଳେ କବି ।
ପରବାକ୍ୟେ କରେ ଅନ୍ଧ
କର୍ଦ୍ଦମେ ଥେଇ ଥେଇକା ॥ 248

L. Kabi 2023-04-12

ମିଥ୍ୟାରେ ସନ୍ତରେ ରାଜା
ହିଂସାରେ ତାର ପାର୍ଷଦ ।
ରାଜନୀତି କରେ ବାବା
ସେ ଦେଶ ଧ୍ୱଂସମାର୍ଗରେ ॥ 249

ବାବା=ରାମଦେବ ଇତ୍ୟାଦି;

L. Kabi 2023-04-12

ଭାଷା ସମାଜସମ୍ପତ୍ତି
ଭାଷାର ହୁଅ ରକ୍ଷକ ।
ସମାଜନାଶିକା ଶକ୍ତି
ଭାଷାବିକୃତିକାରକ ॥ 250

L. Kabi 2023-04-10

ମହାକର୍ମେ ଲତାମୃଗ
ଶାଳଗ୍ରାମ ମରେ ନାଚି
ଯଥା ମର୍କଟ ହାତରେ
ସେ ଭାବେ କବିତା କାନ୍ଦେ
ପଢିଲେ ମୂର୍ଖ ହାବୁଡେ ॥ 251

ଭାଷାଜ୍ଞାନେ ଖଡାନାସ୍ତି
ପ୍ରୋତ୍ସାହନ ବଳେ କବି ।
ପରବାକ୍ୟେ କରେ ଅନ୍ଧ
କର୍ଦ୍ଦମେ ଥେଇଥେଇକା ॥ 252

L. Kabi 2023-04-14

ଜୟ ଶ୍ରୀ ମତଯନ୍ତକ
ମୌସା ନିର୍ବାଚନେ କେବେ
ହାରିବା ନୁହଁ ସମ୍ଭବ ।
ମାରି ଦେବ ମହା ଫାଉଲ୍
ନିଶ୍ଚେ ସେ ମତଯନ୍ତ୍ରକେ ॥ 253

L. Kabi

ଜଣେ ରାଜାଙ୍କ କାହାଣୀ
ଅଜ୍ଞାତକୁଳଶୀଳଙ୍କୁ
ବାସ ଦେବା କଥା ନୁହେଁ।
ସେ ମଧ୍ୟ କଲ ଯେ ରାଜା
ନାମ ନେବ ମୁହୁର୍ମୁହୁଃ ॥ 254

ମିଥ୍ୟାରେ ପକ୍କ ରାଜେନ୍ଦ୍ର

ଅତ୍ୟଲଜ୍ଜ ସମର୍ଥକ ।

ଗଣମାଧ୍ୟମ ଜିହ୍ବାପ

ସେ ଦେଶ ନରକୋନ୍ମୁଖ ॥ 255

ଜିହ୍ବାପ=କୁକୁର;

L. Kabi 2023-04-14

ଗୋଟିଏ ଫୋନ୍ କଲେ ଦାଢି

ୟୁକ୍ରେନ୍ ଯୁଦ୍ଧ ସରେ ଯଦି ।

ଏ ଯୁଦ୍ଧ ମୂଳରେ ଦାୟୀ

ଦାଢିଆ ଖଳନାୟକ ॥ 256

L. Kabi 2023-04-26

ଏତେ ବି ଭାଷ ନା ମୌସା,

କେ ଦେଲା ପତ୍ର - ହାଣିବ ।

ସତରେ ଆସିଲେ ବାଘ

ରକ୍ଷାକାର୍ଯ୍ୟେ କିଏ ଯିବ ॥ 257

L. Kabi 2023-04-24

ବାଲୁଙ୍ଗା ପୁତ୍ର

କୁବୃକ୍ଷ କ୍ରୋଡରେ ଅଗ୍ନି

ଜାଳି ପାରେ ମହାବନ ।

କୁଳମାନ କରେ ଧ୍ୱଂସ

ବାଲୁଙ୍ଗା ପୁତ୍ର ଯେସନ ॥ 258

L. Kabi 2023-04-28

ଶ୍ରୀହୀନ ରାଜ୍ୟ

ନପୁଂସକ କରେ ଯେହ୍ନେ

ମଶା ଏକ ହିଁ ମାନବେ ।

ହୁଏ ଶ୍ରୀହୀନ ସେ ରାଜ୍ୟ

ବାଲୁଙ୍ଗା ପଡିଲେ ରଜା ॥ 259

L. Kabi 2023-04-29

ଜ୍ଞାନପ୍ରାପ୍ତି

ଗୁରୁଦତ୍ତ ଚତୁର୍ଥାଂଶ

ତତୁର୍ଥାଂଶ ସ୍ୱବୁଦ୍ଧିରୁ ।

ସତୀର୍ଥ୍ୟଠୁ ଚତୁର୍ଥାଂଶ

ଚତୁର୍ଥ ସମୟକ୍ରମେ ॥ 260

L. Kabi 20230616

ଦ୍ୟୁଲୋକେ ଦେବତାଃ ସନ୍ତି
ପ୍ରାଣିନଃ ମର୍ତ୍ତ୍ୟମଣ୍ଡଳେ
ତ୍ରିଶଙ୍କୁଃ ତିଷ୍ଠତି ମଧ୍ୟେ
ସର୍ବଲୋକେଷୁ ଗର୍ଦ୍ଦଭାଃ ॥ 261

**L. Kabi 20210628**

ଗୀତାରୁ **(3.14-15)**

ଅନ୍ନରେ ପୋଷିତ ପ୍ରାଣୀ
ଅନ୍ନ ପର୍ଜନ୍ୟଜନ୍ମିତ
ଯଜ୍ଞଜନ୍ମିତ ପର୍ଜନ୍ୟ
ଯଜ୍ଞ ବେଦର ବର୍ଣ୍ଣିତ ॥ 261

ବେଦବକ୍ତା ସ୍ୱୟଂ ବ୍ରହ୍ମା
ବ୍ରହ୍ମା ଅକ୍ଷରତତ୍ତ୍ୱଜ
ବ୍ରହ୍ମ ସର୍ବସ୍ଥଳେ ତେଣୁ
ନିତ୍ୟ ଯଜ୍ଞେ ପ୍ରତିଷ୍ଠିତ ॥ 261

ପର୍ଜନ୍ୟ= ବର୍ଷା; ଅକ୍ଷରତତ୍ତ୍ୱ= ପରମାତ୍ମା;

**L. Kabi 20220709**

ନିର୍ବୋଧ ଚାଣକ୍ୟ

ଏ ଚାଣକ୍ୟଟି ନିର୍ବୋଧ
ସତ୍ତାସାହାଯ୍ୟରେ ବଳୀ ।
ସତ୍ତା ଗଲେ କି ତା ପେଞ୍ଚ,
ସର୍ବଦୁର୍ବୁଦ୍ଧି ନିଷ୍ଫଳ ॥ **262**

ନିର୍ବିଦ୍ୟ ବିଶ୍ୱଗୁରୁ

ଦଣ୍ଡଧାରୀ କହେ ଭାଷା
ଚଣ୍ଡାଳ-ମୁଖନିଃସୃତ ।
ଏ ବିଶ୍ୱଗୁରୁ ନିର୍ବିଦ୍ୟ
ହିଂସାଚାରେ ଅନିନ୍ଦିତ ॥ 263

ଦଣ୍ଡଧାରୀ=ରାଜା;
ନିର୍ବିଦ୍ୟ=ଅଶିକ୍ଷିତ;

**LKabi 29230805**

. ଆଶ୍ଚର୍ଯ୍ୟ କବି

ଅହୋ ଆଶ୍ଚର୍ଯ୍ୟ ସସାର
ବିଚିତ୍ର ଚରିତେ ଗଢା ।
ଭାଳେ ନା ହାରିଲେ ରତ୍ନ,
ଦୁଃଖୀ ଦୀନାର୍ତ୍ତଯାତନେ ॥ 264

**L. Kabi 2023090606**

କବି (ସଂସ୍କୃତ)

ଅହୋ ଆଶ୍ଚର୍ଯ୍ୟ ସସାର

ଢ଼ିଚିତ୍ର ଚରିତେ ସ୍ଥିତ ।

ସ୍ଥିତଧୀ ରତ୍ନବିଭ୍ରଂଶେ,

ଦୁଃଖୀ ଦୀନାର୍ତ୍ତଯାତନେ ॥ 265

L. Kabi 202403040804

ଆଧାରାଧେୟ

ଆଧାରାଧେୟ ସମ୍ବନ୍ଧେ

ବଦ୍ଧ ସର୍ବତ୍ର ଶାଶ୍ୱତ ।

ମାନ୍ୟତାମାନ୍ୟତା ଯୋଗେ

ଅଭିନ୍ନା ସ୍ଥିତି ସର୍ବଦା ॥ 266

L Kabi 202403040804

କବିତା ନ ହୁଏ ଜ୍ଞାନେ

ରମ୍ୟା ସେ ଶିଳ୍ପସମ୍ଭବା ।

ଅନ୍ୟଥା କୃତଧୀ ସର୍ବେ

ହୁଅନ୍ତେ କବିପୁଙ୍ଗବ ॥ 267

ଶିଳ୍ପ= କଳା; କୃତଧୀ=ଉଚ୍ଚଶିକ୍ଷିତ;

L.Kabi 202403120024

କବି (ସଂ)

ଅହୋ ଆଶ୍ଚର୍ଯ୍ୟ ସସାର

ବିଚିତ୍ର ଚରିତେ ଯୁତ ।

ନିଶ୍ଚିନ୍ତ ରତ୍ନବିମୋକ୍ଷେ,

ଦୁଃଖୀ ଦୀନାର୍ତ୍ତଯାତନେ ॥ 268

L. Kabi 20

କିଂ ନ ଗଦ୍ୟେନ (ସଂ)

ତାତ୍ପର୍ଯ୍ୟଂ କେବଳଂ ଯାବତ୍

ଅଗତ୍ୟା ବୁଦ୍ଧିଗମ୍ୟତା ।

କିମର୍ଥଂ କବିତା କୃତ୍ୟା

କିଂ ନ ଗଦ୍ୟେନ ସର୍ବଶଃ ॥ 269

L. Kabi 20240328

ବିଷବୃକ୍ଷ

ବିଷବୃକ୍ଷ ଲଗା ଭାଇ

ଯେତେ ଇଚ୍ଛା ତୁ ଦେଶରେ ।

ତୁ ମଲେ ଫଳ ତା ନିଶ୍ଚେ

ଖାଇବେ ତୋର ବଂଶଜେ ॥ 270

L. Kabi 20240324

ଲୋକନାଥାଭ୍ରୁଭାବପି

ତୁମେ ବି ମୁଁ ବି ରାଜେନ୍ଦ୍ର
ଲୋକନାଥେ ଦୁହେଁ ଗଣା ।
ମୁଁ ବହୁବ୍ରୀହିରେ ଯାହା
ଷଷ୍ଠୀ ତତ୍ପୁରୁଷେ ତୁମେ ॥ **271**

**20240417**

ଗଧ

ଦ୍ୟୁଲୋକେ ଦେବତା ଥାନ୍ତି
ମନୁଷ୍ୟ  ବସୁଧା ତଳେ ।
ପାତାଳେ ଇନ୍ଦ୍ରବୈର୍ଯ୍ୟାସ୍ତ୍ୱ
ସର୍ବଲୋକେ ହିଁ ଗର୍ଦ୍ଦଭେ॥ **272**

୨୦୨୧୦୬୨୮

ମସ୍ତିଷ୍କ ଗୋଟିଏ ଲେଖା
ସବୁ ପ୍ରାଣୀଙ୍କ ମସ୍ତକେ ।
ତହିଁ ଧୀମାନ୍ ରଖେ ବିଦ୍ୟା
ଗଧ ତୁଣ୍ଡନ୍ତି ଗୋବର ॥ **273**

**L. Kabi   20210629**

## ରାଷ୍ଟ୍ର ସମ୍ବନ୍ଧରେ ପଦେ

ଯେଉଁ ପାଠ୍ୟେ ହୁଏ ନାହିଁ ଜୀବେ ପ୍ରେମ ସମ୍ଭବ ।
ସେ ଗ୍ରନ୍ଥ ପଢିବା ମୋର ଥିଲେ ପ୍ରାଣ ଅସମ୍ଭବ ॥1

ଜାତି ଧର୍ମ ତଥା ଭାଷା ନାମେ ଯେ ଦ୍ୱେଷରେ ବ୍ରତୀ
ମନୁଷ୍ୟେ ଗଣିବା ତାକୁ ମୋ ବିଚାରେ ଅଧୋଗତି ॥2

କାରେ କେ ବରିବେ ସାଥୀ ବିଚାରନ୍ତୁ ପରସ୍ପରେ ।
ଯା ନେତ୍ରେ ପ୍ରେମଟା ଜୀହାଦ୍ ଶ୍ୱାନ ସେ ନର ଦେହରେ ॥3

ଅଳ୍ପବିଦ୍ୟ ଥିଲେ ରାଜା ଅନ୍ଧ ସ୍ତାବକ ପାର୍ଷଦ ।
ଲୋକେ ସେଠାର ଦୁର୍ଭାଗା ନିଜେ ରାଜା ହିଁ ଆପଦ ॥4

**L. Kabi L. Kabi 20220908**

**କବିତା: ଯାଉ ଅନ୍ତିମ ସନ୍ତକ**
**ଛନ୍ଦ: ପଥ୍ୟାବକ୍ତ୍ର ଅନୁଷ୍ଟୁପ୍ (ମା. ଅସ.)**

କଣ୍ଠରୁଦ୍ଧ ଅଭିବ୍ୟକ୍ତି ସଂସ୍ଥାସ୍ୱାୟତ୍ତତା ହତା ।
ମିଡିଆ ଗୋଦି-ସନ୍ତାନ ପାଦଚୁମ୍ବକ ପାର୍ଷଦ ॥1॥

ଗଣତନ୍ତ୍ରର ବିଭ୍ରାନ୍ତି ସର୍ଜେ ଯନ୍ତ୍ରେ ମତାଙ୍କନ ।
ରିକ୍ତକର୍ପୂର ସେ ବସ୍ତ୍ରେ ନାହିଁସାମାନ୍ୟ ସୌରଭ॥2॥

ପ୍ରାଚୀନ ଚୀର୍ଣ୍ଣ ସେ ବସ୍ତ୍ରେ କଲେ ଅନଳ ସଞ୍ଚାନ
ପଞ୍ଚାଶ ବର୍ଷ ରାଜତ୍ୱ ! ଆହା ମସ୍ତିଷ୍କ ଉର୍ବର ॥3॥

ଦାୟୀ ଏ ଦୁର୍ଦ୍ଦଶା ଲାଗି ନିଜ ଇଚ୍ଛାନ୍ଧଭକ୍ତକେ ।
ମୌସା ନେଇଛି ଏହାଙ୍କ ମୂଢତାର ସୁଯୋଗ ହିଁ ॥4॥

**L. Kabi 202307221050**

## ବିବିଧା (ଅନ୍ୟାନ୍ୟ ଛନ୍ଦ)

ଛନ୍ଦ ସଭାର୍ଯ୍ୟଗତି **14 -vp/**

ସଗଣ ଭଗଣ ରଗଣ ୟଗଣ **+**ଗୁଗୁ

**112/211/21••2/122+22**

ଅବଳା ଜୀବନ ହାୟ ଏହି ତୋ କାହାଣୀ -
ବୁକୁରେ ବସର ପେୟ , ବେନିନେତ୍ରେ ପାଣି;
କବି ଗାଏ ଜୟଗୀତି ନାଟ୍ୟଶାଳା ଗାଏ,
ଅଛି କେ ପାଖକୁ ଆସି ଆଖି ପୋଛେ ହାଏ

*ବସର ପେୟ= ଶିଶୁର ପାନୀୟ (ଦୁଗ୍ଧ)*

**L. Kabi 202402031515**

ଇନ୍ଦ୍ରବଜ୍ରା ଛନ୍ଦ

ବିଶ୍ୱେ ନିବାସୀ ଶୁଣ ପୁତ୍ରକନ୍ୟା
ଆତ୍ମା ତୁମେ ଅନ୍ତର ମୁକ୍ତିକାମୀ ।
ବ୍ରହ୍ମାଣ୍ଡ ମଧ୍ୟେ ଅଟ ନିତ୍ୟ ସତ୍ତା
ଚୈତନ୍ୟବତ୍ତା ଧରି ଅଗ୍ରଗାମୀ ॥ **001**

**L. Kabi 20220908**

ଶିଖରିଣୀ ଛନ୍ଦ

ଅହଂ ଭୂୟୋଭୂୟସ୍ତ୍ୱମପି ଖଳୁ ଭୂୟୋଽସି ବହୁଧା
ଭବାଂଲ୍ଲୋକେ ସ୍ଥିତ୍ୱା ଜନହିତକ ନୀତିଂ ପ୍ରସୃଜତାତ୍
ବୟୋଜ୍ୟେଷ୍ଠୋଽସ୍ମୀତି ତ୍ୱରିତପଦପାତର୍ପୁରତ ମେ
ହିତାକାଙ୍କ୍ଷୀ ତେଽହଂ ତବ କରତଳେ ମେ ଶୁଭମତିଃ
॥ **002**

**L. Kabi 20220908**

ଗୁଣାଙ୍ଗୀ ଛନ୍ଦ

ମୋନୋଜ୍ଞା ଏ ଛନ୍ଦ ସତେ ଗୁଣାଙ୍ଗୀ
ଏ ଛନ୍ଦେ ଲେଖା ଅଛି ବାକି ଭାଗ୍ୟେ
ନିଷ୍ଠେ ଏହା ଲେଖିବି ଓଡିଆରେ,
ଏ କେବେ ମୋତେ ବଳି ଯାଇ ପାରେ ॥**003**

**L. Kabi 20220909**

ଇନ୍ଦ୍ରବଜ୍ରା ଛନ୍ଦ

ନା ସର୍ବକର୍ମେ କରଣ ପ୍ରୟୋଗ୍ୟ ।
ଆସ୍ୟେ ନୁହେଁ କଥ୍ୟ ସମସ୍ତ ଭାଷା
ଆହାର ସୁଦ୍ଧା ସବୁ କାହିଁ ଭୋଗ୍ୟ ?
ରେ ଚିତ୍ତ ସର୍ବତ୍ର ନ ବାଢ ଆଶା ॥ **004**

**L. Kabi 20220909**

ଦୋହା

ଛୋଟା ବକରା

ବକରା କାଟେ ବ୍ୟାଧ ତୋ

ଶାବକ କହତା ଦୋସ୍ତ

ମେରା ଭି ଦୋ ମହିନେମେ

ମାଂସ ବନେଗା ମସ୍ତ ll **005**

**L. Kabi 20221023**

ଇନ୍ଦ୍ରବଜ୍ରା

ଭିକ୍ଷାନ୍ନଜୀବୀ ଅପରେ ବସାଏ

ସିଂହାସନେ ଯା ବଶରେ ନ ଥାଏ

ତତ୍ରାପି ଭାଳେ ଅଭିଷିକ୍ତ ଭିକ୍ଷୁ

ଏ ରାଜ୍ୟ ଜାଣେ ମୁ ହିଁ ତାଙ୍କ ରାଜା ll **006**

**L. Kabi 20221023**

ଇନ୍ଦ୍ରବଜ୍ରା

ରାଜା ବିଧର୍ମୀ କଟୁଆଳ ଚୋଠା

ଭକ୍ତେ ଅଲଜ୍ଜା ମତିହୀନ ମନ୍ତ୍ରୀ

ଏହାଙ୍କୁ ଗାଳେ କଷି ଦେବ ଠୋ ଠା

ପ୍ରଚଣ୍ଡ ଘାତେ ବୁଝି ନେବ ଯନ୍ତ୍ରୀ l **007**

ଯନ୍ତ୍ରୀ= **tormentor,** ଅତ୍ୟାଚାରୀ;

**L. Kabi 20221023**

ଇନ୍ଦ୍ରବଜ୍ରା

ଯେ ଶ୍ୱାନ ପାଳନ୍ତି କହନ୍ତୁ ମୋତେ

ଜିହ୍ୱାପ ଯେବେ ବିଛଣାକୁ ଯାଏ

ସନ୍ଦେହ ଯାହା ଦିଅ ମୋ ତୁଟାଇ:

ବିଷ୍ଠାଦି ସେ ବର୍ଜନ ସାରି କେବେ

ଶୌଚକ୍ରିୟା ଶୀଘ୍ର କରେ କି ନାହିଁ l **008**

*ଜିହ୍ୱାପ= କୁତ୍ତା;*

**L. Kabi 202210252130**

ନିର୍ଦ୍ଦୋଷ ସର୍କାର

ଭାଗ୍ୟେ ଥିଲା ମାରକ ମୋର୍ବି ପୋଲେ l

ନିର୍ଦ୍ଦୋଷ ପୂରା ସରକାର ବାଲା l

ଦେବଙ୍କ ଆଗେ ଦିଶିଲା ବିଡାଳା

ତାହାରି ଦୋଷେ ସବୁ କାଣ୍ଡ ହେଲା ll **009**

ଦୁର୍ଭାଗ୍ୟ ମୂଳେ ମିଳିଲାଣି ଦୋଷୀ

ସର୍କାର ପୂରା ମଳି ଧୂଳି ହୀନ;

ଦେବାଳୟେ ଆସିଥିଲା ବିରାଡି

ବିଲ୍ଲୀ କଲା ମୋର୍ବିର ପୋଲ ଭଗ୍ନ ll **010**

**L. Kabi 202211062323**

ବିଧ୍ୱଂସକାଳେ ବିପରୀତବୁଦ୍ଧିଃ

ମୂଳ ଲେଖା ସଂସ୍କୃତ ସୁଭାଷିତମ୍‌ରୁ

================

**न भूतपूर्वं न कदापि वार्ता**

**हेम्न: कुरंगो न कदापि दृष्ट: |**

**तथापि तृष्णा रघुनन्दनस्य**

**विनाशकाले विपरीतबुद्धि: ||**

ଅନୁବାଦାବଳୀ

=========

ଶୁଣା ନ ଯାଏ କିଛି ତାର ବାର୍ତ୍ତା

ସୁନା କୁରଙ୍ଗୀ ଭୁବନେ ଅଦୃଷ୍ଟା **।।**

ତଥାପି ତୃଷ୍ଣାବଶ ରାମ ରାଜା,

ବିନାଶକାଳେ ବିପରୀତବୁଦ୍ଧି **।**

**-ଛନ୍ଦ: ଉପେନ୍ଦ୍ରବଜ୍ରା (କୋମଳ ଅନୁବାଦ) (11)**

**L. Kabi 202301101111**

ହେମାଙ୍ଗରିଶ୍ୟା ବହିରେ ମିଳେନା

କାନେ ପଡେ ନା କିଛି ତାର ଲୀଳା

ତତ୍ରାପି ରାଜା ରଘୁବଂଶଚକ୍ରୀ

ତା ଲୋଭୁ ନେଲେ ସୁବିଶାଳ କୀଳା ‖ ସୁ-୫୫

**-ଛନ୍ଦ: ଇନ୍ଦ୍ରବଜ୍ରା (କଠୋର ଅନୁବାଦ ) (11)**

**ଶବ୍ଦାର୍ଥ:- ହେମାଙ୍ଗରିଶ୍ୟା= ସୁନା ହରିଣୀ; ତତ୍ରାପି= ତଥାପି; ରଘୁବଂଶଚକ୍ରୀ= ରଘୁକୁଳଶ୍ରେଷ୍ଠ ରାମ;**

**-ଲଲାଟେନ୍ଦୁ କବି ୨୦୨୧୦୮୧୫୦୬୨୮**

ହେମାଙ୍ଗରିଶ୍ୟା ବହିରେ ମିଳେନା

କାନେ ପଡେ ନା କିଛି ତାର ଲୀଳା

ତତ୍ରାପି ରାଜା ରଘୁବଂଶଚକ୍ରୀ

ତା ଲୋଭୁ ନେଲେ ସୁବିଶାଳ କୀଳା ‖ ସୁ-୫୫

**-ଛନ୍ଦ: ଇନ୍ଦ୍ରବଜ୍ରା (କଠୋର ଅନୁବାଦ ) (11)**

**ଶବ୍ଦାର୍ଥ:- ହେମାଙ୍ଗରିଶ୍ୟା= ସୁନା ହରିଣୀ; ତତ୍ରାପି= ତଥାପି; ରଘୁବଂଶଚକ୍ରୀ= ରଘୁକୁଳଶ୍ରେଷ୍ଠ ରାମ;**

**-ବାଣୀପୁତ୍ର ୨୦୨୧୦୮୧୫୦୬୨୮**

 କର୍ବୁରାଙ୍ଗମୃଗୀ ଅଦୃଷ୍ଟପଠିତା ନା କେ କହେ ତା କଥା

ହେଲେ ଲୋଭ ବଶେ ବିନାଶସମୟେ ରାମଙ୍କ ନିର୍ବୋଧତା ।
ହେବାରେ ନିକଟେ ବିନାଶ ସମୟ ପ୍ରଜ୍ଞା ହିଁ ତେଜେ ନରେ
ରାଜା ରାମ ବନେ ପ୍ରଧାବିତ ଯଥା ମାୟାମୃଗୀ ଲୋଭରେ ।
-ଛନ୍ଦ: ଶାର୍ଦ୍ଦୂଳବିକ୍ରୀଡିତମ୍ (19)
202301101313

ଆପତ୍କାଳେ ମତି ହଜି ଗଲା, ବୋଲି ଦୈତ୍ୟଙ୍କ ମାୟା-
ଜାଲେ ସୀତାପତି ଫସିଗଲେ, ଲାଗିଲା ତାଙ୍କୁ ବାୟା
ଶାସ୍ତ୍ରେ ଯାହା ଲିଖିତ ନ ମିଳେ ବର୍ଣ୍ଣନା କେ କରେ ନା
ଏଣାକ୍ଷୀଟେ ପଛ କରୁଥିଲେ ସେ ପୁଣି ସ୍ୱର୍ଣ୍ଣଦେହା ।
-ଛନ୍ଦ: ମନ୍ଦାକ୍ରାନ୍ତା (17)

କେବେ ଲେଖା ମିଳୁଛି କି ବହିରେ
କର୍ବୂରାଭା ବନର ସୁନୟନା ।
ହେଲା ଯେବେ ବିନଶନ ପୁରତଃ
ରାଜାରାମ ପ୍ରବଳ ଗତମନା ।
-ଛନ୍ଦ: ଭ୍ରମର ବିଳସିତମ୍ (କୋମଳ ଅନୁବାଦ) (11)

ନାହିଁ ଗ୍ରନ୍ଥେ ପୁରଟମୃଗ କଥା
କା ନେତ୍ରେ ସେ ଦିଶିଛି କି ଜଗତେ ।
ପ୍ରଜ୍ଞାଲୋପେ ରଘୁକୁଳ ତନୟ
ତା ପଶ୍ଚାତେ ଦଉଡି କି ଅଥୟ ।
-ଛନ୍ଦ: ଭ୍ରମରବିଳସିତମ୍ (କଠୋର ଅନୁବାଦ) (11)
202301101616

ହେମାଙ୍ଗ କଶ୍ୟପ ତ କା ନୟନେ ପଡେ ନା
ଗ୍ରନ୍ଥେ ବି ନାହିଁ ଜଗତେ କିଛି ତାର ଲେଖା ।
ତତ୍ରାପି ରାମ ଭୁଲି ବୁଦ୍ଧି ବିବେକ ବିଦ୍ୟା
ଶେଷାଗମେ ପଶିଗଲେ ବିପରୀତ କାଣ୍ଡେ ।
-ଛନ୍ଦ: ବସନ୍ତତିଳକା (12)

ସୁନାକୁରଙ୍ଗୀ ଅଛି କେଉଁ ପୁସ୍ତକେ
କିଏ କହେ ଦେଖିଛି ତାକୁ ଆଖିରେ ।
ଅଦୃଷ୍ଟ ପଶ୍ଚାତ୍ ରଘୁବୀର ଧାଇଁଲେ
ବିନାଶକାଳେ ବିପରୀତ ବୁଦ୍ଧିରେ ॥1॥
-ଛନ୍ଦ: ବଂଶସ୍ଥ/ବଂଶସ୍ଥ ବିଳମ୍ (12)
L. Kabi 202307100710

କର୍ବୂରାଙ୍ଗୀ କୁରଙ୍ଗୀ ପଡିଅଛି ନୟନେ -

କେହି କେବେ କହେ ନା ।

ଯେତେ ଶାସ୍ତ୍ରଙ୍କ ପତ୍ରେ ଲିଖିତ ବି ନ ମିଳେ

ସ୍ୱର୍ଣ୍ଣରୌହୀବିବୃତ୍ତି ।

ସମ୍ମୋହେ ଯେ ପଡେ ସେ ପଠିତ ସବୁ କଥା

ବିସ୍ମରେ ଦୁର୍ମୁହୂର୍ତ୍ତେ ।

ସେ ଭାବେ ରାମଚନ୍ଦ୍ର- ଙ୍କ ମତି ହଜି ଗଲା

ଆସିବାରେ ନିବୃତ୍ତି ॥1॥

-ଛନ୍ଦ: ସ୍ରଗ୍ଧରା; (21)

କର୍ବୂରା= ସୁନା; କୁରଙ୍ଗୀ= ହରିଣୀ; ପତ୍ର= ପୃଷ୍ଠା;
ରୌହୀ= ମୃଗ; ନିବୃତ୍ତି= ବିନାଶ;

**L. Kabi 202307110828**

ସୁନାହରିଣୀ ଅଛି ବୋଲି

ଶୁଣା କି ପଢା କିଛି ନାହିଁ ।

ତଥାପି ନୃପାଳକ ରାମ

ବିନଷ୍ଟମତି ଭ୍ରମ ପାଇ ।

-ଛନ୍ଦ: କୁହୂ (9)

**L. Kabi 202307122222**

କନକବରଣୀ ରିଷ୍ୟ

ଜନବଚନରେ ନାହିଁ ।

ବହି ବି ନିରବେ ମାତ୍ର

କି ଅକଲ ଗୁଡୁମ୍ ରାମ ।

- ଛନ୍ଦ: ହରିତ୍ (8)

**L. Kabi 20230713**

ନାହିଁ ବିବରଣୀ ପୁସ୍ତକଟିପ୍ପଣୀ

ସୁବର୍ଣ୍ଣ ହରିଣୀ କଥା

କିନ୍ତୁ ରଘୁପତି ତୃଷ୍ଣାପୂର୍ଣ୍ଣମତି

ଡାକିଲେ ବିପତ୍ତି ବୃଥା ।

-ଶୈଳୀ: ବଙ୍ଗଳାଶ୍ରୀ

**It has never happened before, nobody has heard about, no body has seen a golden deer. But, Shri Rama's greed (about it) is unfavorable intention leading to destruction.**

# ଢଗାବଳୀ

## ଲୋକୋକ୍ତି

ଶ୍ରୀପାଦ ଥାଏ ଝୁଲି ଛାତ ଆଡେ,
ତଳେ ପ୍ରସାରେ ତିନି ହାତ ତାର ।
ଆଦେଶ ମାତ୍ରେ ସହସା ଚଳେ ସେ
ଚଳାଅ ଯେତେ ଥିବ ସେହିଠାର ॥01॥
ଉପଜାତି ଛନ୍ଦ (ଇନ୍ଦ୍ରବଜ୍ରା+ଉପେନ୍ଦ୍ରବଜ୍ରା)

ଚତୁର୍ଦନ୍ତ ଚତୁଷ୍ପାର୍ଶ୍ୱେ
ତା ମଧ୍ୟେ ମୁଖ ବୃତ୍ତକ ।
ଖାଏ ନା ବହ୍ନି ଉଦ୍ଗାରେ
କହ ସେ ବସ୍ତୁ ନାମଟା ॥02॥
(ଛନ୍ଦ= ପଥ୍ୟାବକ୍ତ୍ର ଅନୁଷ୍ଟୁପ୍)

କୁମ୍ଭୀରଟେ ବା ବଢି ପାରି ନାହିଁ
ଶାର୍ଦ୍ଦୂଳ ଯେହ୍ନେ ପରମାଂସ ଖାଏ ।
ମନୁଷ୍ୟ ସଙ୍ଗେ ସଦନେ ନିବାସୀ
ତଳେ ତୁମେ, ସେ ଉପରେ ହିଁ ଥାଏ ॥03॥
ଉପଜାତି ଛନ୍ଦ (ଇନ୍ଦ୍ରବଜ୍ରା+ଉପେନ୍ଦ୍ରବଜ୍ରା)

ଆଙ୍ଗୁଠି ତୁଲ୍ୟ ତା ମାପ
କଣା ତା ବେଣ୍ଟମୂଳରେ ।
କ୍ଷୁଦ୍ର ବେଣ୍ଟ ମହାକର୍ମ
ତା ବିନା ଦ୍ୱାରବାରଣ ॥04॥
(ଛନ୍ଦ= ପଥ୍ୟାବକ୍ତ୍ର ଅନୁଷ୍ଟୁପ୍)

ଦୀର୍ଘକାଳ ଗମେ ନିଦ୍ରା
ମଧ୍ୟେ ମଧ୍ୟେ ସୁଚଞ୍ଚଳ ।
ଚିତ୍କାର ସେ କଲା ମାତ୍ରେ
ତଣ୍ଡି ତାର ଚିପା ହୁଏ ॥05॥
(ଛନ୍ଦ= ପଥ୍ୟାବକ୍ତ୍ର ଅନୁଷ୍ଟୁପ୍)

ଯାତ୍ରାପଥେ ପ୍ରଭୁଙ୍କୁ ତା କରି ନେଇ ବନ୍ଦୀ
ଥାଏ ସଯତ୍ନ ନିକଟେ କରି ଦୀର୍ଘ ଯାତ୍ରା ।
ଖାଏ ସିନା ତରଳ, ତା ମଳ ବାଷ୍ପରୂପେ,

ସେ ବସ୍ତୁନାମଟି କିଏ କହ ପାଠକର୍ତ୍ତା ॥06॥
(ଛନ୍ଦ= ବସନ୍ତତିଳକା)

ଠପ୍-ଶବ୍ଦେ ସେ କରେ କାର୍ଯ୍ୟ
ଠପ୍-ଶବ୍ଦେ ଛୁଟି କାର୍ଯ୍ୟରୁ ।
ବାହାରୁ ସ୍ଥିର ସେ ସାଥୀ
ଭିତରେ ସ୍ୱର୍ଣ ମାରକ ॥07॥
(ଛନ୍ଦ= ପଥ୍ୟାବକ୍ତ୍ର ଅନୁଷ୍ଟୁପ୍)

ବର୍ଜ୍ୟାହାରୀ ସୁଢଳତନୁ ସେ ଶୁଭ୍ର ସୁଶ୍ଳକ୍ଷ୍ଣ କାନ୍ତି
ନିର୍ଦ୍ଦିଷ୍ଟ ପ୍ରାପ୍ତ ସମୟକୁ ସେ ବାଳବୃଦ୍ଧଙ୍କ ଖୋଜା ।
ତାହା ପାଶେ ଉଦକ ବି ମିଳେ ହେଉ ମଧାହ୍ନ, ରାତ୍ରୀ,
ସେବା ତାହାର ଲଭି ଅଇଲେ ରୁଦ୍ଧ ତାହାର ଦର୍ଜା ॥08॥
(ଛନ୍ଦ= ମନ୍ଦାକ୍ରାନ୍ତା)

ନାରଙ୍ଗ ଉର୍ଦ୍ଧ୍ୱେ ତଳ ପତ୍ରବର୍ଣ୍ଣ
ତା ମଧ୍ୟଦେଶେ ଅତି ଶୁଭ୍ର ତେଜ ।
ଶୁଭ୍ରାଂଶ ମଧ୍ୟେ ସ୍ଥିର ଏକ ଚକ୍ର
ଏ ଦେଶବାସୀ ସକଳଙ୍କ ପୂଜ୍ୟ ॥09॥
(ଛନ୍ଦ=ଇନ୍ଦ୍ରବଜ୍ରା)

ଗୋବମୂଳ, ଶିର ସ୍ଥୂଳ,
ପଥେ ପାଥେୟ ପାନ୍ଥର ।
ଶୁଭ୍ର ଲେପ ହରିତ୍ କାୟେ,
ଗର୍ଭେ ଷଡ୍ରସ ପୂରିତ ॥10॥
(ଛନ୍ଦ= ପଥ୍ୟାବକ୍ତ୍ର ଅନୁଷ୍ଟୁପ୍)

ଶଶାଙ୍କ ଯେହ୍ନେ ଅତି ଗୋଲ ଦେହଟା
ପରସ୍ତ ଥାଏ ଦୁଇ, ବାଷ୍ପ ସେଥିରେ ।
ଦରିଦ୍ର ଖୋଜେ ଧନବାନ୍ ବି ସର୍ବଦା
ମରନ୍ତି ସେ ଗୋଟିକ ଲାଗି ତପ୍ତରେ ॥11॥
(ଛନ୍ଦ: ବଂଶସ୍ଥ ବା ବଂଶସ୍ଥବିଳମ୍)
ଗଣ: ଜଗଣ ତଗଣ ଜଗଣ ରଗଣ
ବର୍ଣ୍ଣ: 121/221/121/212

ଭଗ୍ନୀଭାଇ ତଥା ପ୍ରିୟପ୍ରିୟତମା ମଧ୍ୟେ ବିବାଦ ସ୍ଥଳେ
କାହା ଆଚରଣ-ପ୍ରଭାବ କି ରହେ ତା ସ୍ପଷ୍ଟ ଏ ପଦ୍ୟରେ ।

ଛନ୍ଦୋବଦ୍ଧ ପଦେ ଅନେକ ସମୟେ ନେତ୍ରେ ପଡେ ନା ଜମା

ଏବେ କିନ୍ତୁ ମନ ପ୍ରଫୁଲ୍ଲ ପଢି ଏ ଶାର୍ଦ୍ଦୂଳ ବିକ୍ରୀଡିତମ୍ ॥ 1

**L Kabi 202402061214**

ଏ ଇନ୍ଦ୍ରବଜ୍ରା ଅତି ହର୍ଷଦାୟୀ

ନାନାଦି ଶିକ୍ଷା ଅଛି ଛନ୍ଦ ମଧ୍ୟଜ ।

ଲେଖନ୍ତୁ ମୋ ଉତ୍କଳ ଲୋକ ଛନ୍ଦେ

ନିଶ୍ଚେ ଦିନେ ପୂରିବ ମୋର ଆଶା ॥

**L Kabi 202402061223**

ମାଧୁର୍ଯ୍ୟ ବଂଶସ୍ଥର ଗାୟନେ ଭରା

ରଚନ୍ତୁ ସର୍ବେ କବିତା ପଦେ ପଦେ

ମନୋରମଚ୍ଛନ୍ଦ ଭରା ସୁଗୀତିକା

ମୁଁ ମଧ ସଙ୍ଗେ ଥିବି ସେହି ମାର୍ଗରେ ।

**L Kabi 202402061235**

ସାଧୁବାଦ ଛନ୍ଦରେ

**Satya Narayan Dash**

କିଂ ସତ୍ୟଂ କିମସତ୍ୟଂ ବା

ଜ୍ଞାନଂ ପୁଂସସ୍ୟ ସୀମିତଂ ।

ଯଦା ତଂ ଦୃଶ୍ୟତେ ସତ୍ୟଂ

ସଃ ତୁଷ୍ଟୀଂ ଯାତି ଏବ ହି ॥

**L Kabi 202402061326**